ବିଶ୍ୱସାହିତ୍ୟ ଗ୍ରନ୍ଥମାଳା : ସଂଖ୍ୟା—୧୮

# ଶେକ୍‌ସପିଅର୍ କାହାଣୀ

## ଦ୍ୱିତୀୟ ଖଣ୍ଡ


ଅନୁବାଦ :

ଅଧ୍ୟାପକ ଶ୍ରୀଧର ଦାସ,

ଏମ୍. ଏ., ବି. ଇଡ୍.



ଗ୍ରନ୍ଥମନ୍ଦିର

ପ୍ରକାଶକ :

ଶ୍ରୀ ଅଭିରାମ ମହାପାତ୍ର

ଗ୍ର ନ୍ଥ ମ ନ୍ଦି ର

କଟକ-୨ : ବ୍ରହ୍ମପୁର

ମୁଦ୍ରକ :

ଶ୍ରୀ ଜୟରାମ ମହାପାତ୍ର

ଗ୍ର ନ୍ଥ ପ୍ର କା ଶି ନୀ

କଟକ-୧

ପ୍ରଥମ ମୁଦ୍ରଣ : ଜୁଲାଇ, ୧୯୭୦

ଦ୍ୱିତୀୟ ମୁଦ୍ରଣ : ଜୁନ, ୧୯୭୨

ମୂଲ୍ୟ : ଦୁଇ ଟଙ୍କା

# ସୂଚୀ

# ଦ୍ୱାଦଶୀ-ରଜନୀ ବା ଭ୍ରମଭଞ୍ଜନ

ମେସାଲିନ ସହରରେ ଦୁଇଟି ଯମଜ ସନ୍ତାନ ଜନ୍ମିଥିଲେ— ଗୋଟିଏ ଭାଇ ଓ ଅନ୍ୟଟି ଭଉଣୀ । ଭାଇର ନାମ ସେବାଷ୍ଟିଆନ ଓ ଭଉଣୀର ନାମ ଭାଓଲା । ଅନେକ କ୍ଷେତ୍ରରେ ଏପରି ଯମଜ ସନ୍ତାନ ଜନ୍ମିଥାନ୍ତି; କିନ୍ତୁ ଏ କ୍ଷେତ୍ରରେ ସନ୍ତାନ ଦୁଇଟିଙ୍କର ବର୍ଣ୍ଣ, ଆକାର, କଣ୍ଠସ୍ୱର ଏପରି ମିଳିଯାଇଥିଲା ଯେ ଏକପ୍ରକାର ବେଶଭୂଷାରେ ଥିଲେ ଜଣକୁ ଅନ୍ୟ ଜଣକଠାରୁ ବାରିବାର କୌଣସି ଉପାୟ ନ ଥିଲା । ସତେ ଯେପରି ବିଧାତା ଦୁହିଁଙ୍କୁ ଗୋଟିଏ ଛାଞ୍ଚରେ ପକାଇ ତିଆରି କରିଥିଲେ ।

ଦୁହେଁ କ୍ରମେ ଯୌବନରେ ପଦାର୍ପଣ କଲେ । ଜନ୍ମକାଳରୁ ଏକ ସଙ୍ଗରେ ବଢ଼ିଆସିଥିବାରୁ ଦୁହିଁଙ୍କ ମଧ୍ୟରେ ଗଭୀର ସ୍ନେହ ଜାତ ହୋଇଥିଲା । ଜଣେ ଅନ୍ୟ ଜଣକଠାରୁ ଦଣ୍ଡକ ପାଇଁ ଅନ୍ତର ହେଲେ ଘୋର ମନୋଦୁଃଖ ଅନୁଭବ କରୁଥିଲା ।

ଆଶ୍ଚର୍ଯ୍ୟର ବିଷୟ, ବିଧାତା ଏ ଦୁହିଁଙ୍କୁ ଜନ୍ମରୁ କେବଳ ଏକାପରି ଗଢ଼ି ନ ଥିଲା, ଦୁହିଁଙ୍କର ଜୀବନକୁ ମଧ୍ୟ ଏପରି ଛନ୍ଦି ଦେଇଥିଲା ଯେ ଥରେ ଜାହାଜରେ ସମୁଦ୍ରଯାତ୍ରା କରୁଥିଲାବେଳେ ଦୁହେଁଯାକ ଏକା ବିପଦର ସମ୍ମୁଖୀନ ହେଲେ ।

ସେମାନଙ୍କ ଜାହାଜ ଇଲିରିଆ ରାଜ୍ୟର ଉପକୂଳରେ ଗତି କରୁଥିଲାବେଳେ ଏକ ପ୍ରଚଣ୍ଡ ବାତ୍ୟା ଉପସ୍ଥିତ ହେଲା । ଜାହାଜଟି ଗୋଟିଏ ପାହାଡ଼ରେ ପିଟି ହୋଇ ଦୁଇ ଖଣ୍ଡ ହୋଇଗଲା । ଯାତ୍ରୀମାନଙ୍କ ମଧ୍ୟରୁ ଅନେକେ ଏହି ଦୁର୍ଘଟଣାରେ ପ୍ରାଣ ହରାଇଲେ । ଅତ

ଅଳ୍ପ ଲୋକ ଜୀବନ ରକ୍ଷା କରିବାକୁ ସମର୍ଥ ହୋଇଥିଲେ । ଜାହାଜର କପ୍ତାନ ଗୋଟିଏ କ୍ଷୁଦ୍ର ନୌକାରେ ଅଳ୍ପ କେତେ ଜଣ ନାବିକଙ୍କ ସହିତ ଭାଓଲିଙ୍କୁ ନେଇ ନିକଟବର୍ତ୍ତୀ ଇଲିରିଆ ରାଜ୍ୟକୁ ଚାଲି ଆସିଲେ ।

ଭାଓଲିଙ୍କର ଜୀବନ ରକ୍ଷା ହେଲା ସତ୍ୟ; ମାତ୍ର ତାଙ୍କର ଦୁଃଖର ସୀମା ନ ଥିଲା । ସେବାଷ୍ଟିଆନଙ୍କର ଦଶା କଅଣ ହେଲା, ସେହି ଚିନ୍ତାରେ ସେ ଅବସନ୍ନ ହୋଇପଡ଼ିଲେ । ତାଙ୍କର ଧାରଣା ହେଲା ଯେ ସେବାଷ୍ଟିଆନ ଅନ୍ୟମାନଙ୍କ ସହିତ ସମୁଦ୍ରଗର୍ଭରେ ପ୍ରାଣ ହରାଇଅଛନ୍ତି । ମାତ୍ର ଜାହାଜର କପ୍ତାନ କହିଲେ, "ଏପରି ଆଶଙ୍କା କର ନାହିଁ । ଜାହାଜ ଦୁଇ ଖଣ୍ଡ ହୋଇଗଲାବେଳେ ମୁଁ ଦେଖିଛି ଯେ ତୁମର ଭାଇ ନିଜକୁ ଗୋଟିଏ ମାସ୍ତୁଲ ସହିତ ଦୃଢ଼ ଭାବରେ ବାନ୍ଧିଦେଲେ । ଏହା ପରେ ମାସ୍ତୁଲଟି ଅନେକ ଦୂର ପର୍ଯ୍ୟନ୍ତ ଭାସିଯାଉଥିବାର ମୁଁ ଦେଖିଛି । ମୋର ଦୃଢ଼ ବିଶ୍ୱାସ ମାସ୍ତୁଲଟି ଭାସି ଯାଇ କୌଣସିଠାରେ କୂଳରେ ଲାଗିଥିବ ଓ ସେବାଷ୍ଟିଆନଙ୍କର ଜୀବନ ରକ୍ଷା ହୋଇଥିବ ।"

ଏହି କଥାରେ ଭାଓଲି ସାମାନ୍ୟ ଆଶ୍ୱସ୍ତ ହେଲେ । ସେବାଷ୍ଟିଆନ ଜୀବନରେ ଥିବେ ବୋଲି ତାଙ୍କ ମନରେ ଟିକିଏ ଆଶା ହେଲା । କିନ୍ତୁ ଏଭଳି ଏକ ଅପରିଚିତ ରାଜ୍ୟରେ ବନ୍ଧୁହୀନ ଅବସ୍ଥାରେ ସେ କିପରି ଜୀବନ ଯାପନ କରିବେ ? ଏହି ଚିନ୍ତାରେ ସେ ବିବ୍ରତ ହୋଇପଡ଼ିଲେ । କପ୍ତାନ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ, "ଏପରି ଅଧୀର ହେବାର କାରଣ ନାହିଁ । ଏହି ରାଜ୍ୟ ବିଷୟରେ ମୁଁ ବହୁକଥା ଜାଣେ । ମୋର ଜନ୍ମସ୍ଥାନ ଏହି ରାଜ୍ୟରେ । ଆମେ ବର୍ତ୍ତମାନ ଯେଉଁଠାରେ ଅଛେ, ଏଠାରୁ ଆମ ଘର ମାତ୍ର ଦୁଇ ତିନି ଘଣ୍ଟାର ବାଟ ।" ଭାଓଲି ଏହି ରାଜ୍ୟର ବିଶଦ ବିବରଣୀ

ଜାଣିବାକୁ ଚାହିଁବାରୁ କପ୍ତାନ କହିଲେ, "ଇଲାରିଆ ରାଜ୍ୟର ଡ୍ୟୁକ୍ ହେଉଛନ୍ତି ଅର୍ସିନୋ । ସେ ବଡ଼ ଉଦାର ଓ ନ୍ୟାୟପରାୟଣ ବୋଲି ରାଜ୍ୟରେ ତାଙ୍କର ସୁନାମ ଅଛି ।"

ଭାଇଓଲାଙ୍କର ମନେ ପଡ଼ିଲା ଯେ କେତେକ ବର୍ଷ ତଳେ ସେ ଏହି ଅର୍ସିନୋଙ୍କ ବିଷୟ ନିଜ ପିତାଙ୍କଠାରୁ ଶୁଣିଥିଲେ । ସେତେବେଳେ ସେ ବିବାହ କରି ନ ଥିଲେ । କପ୍ତାନ କହିଲେ, "ଏବେ ମଧ୍ୟ ସେ ଅବିବାହିତ । ଅନ୍ତତଃ ଦୁଇ ତିନି ମାସ ପୂର୍ବେ ମୁଁ ଏଠାରୁ ଯିବାବେଳେ ସେ ଅବିବାହିତ ଥିଲେ । ସେତେବେଳେ ମୁଁ ଶୁଣିଥିଲି ଯେ ସେ ଜଣେ ବଡ଼ ଜମିଦାରଙ୍କର କନ୍ୟାକୁ ବିବାହ କରିବାକୁ ଏକାନ୍ତ ଇଚ୍ଛୁକ । ଏହି କନ୍ୟାଟିର ନାମ ଓଲିଭିଆ । ଓଲିଭିଆଙ୍କର ରୂପ ଗୁଣ କଥା ରାଜ୍ୟର ସମସ୍ତଙ୍କ ମୁହଁରୁ ଶୁଣାଯାଏ । ମାତ୍ର ପ୍ରାୟ ବର୍ଷେକ ପୂର୍ବେ ତାଙ୍କ ପିତାଙ୍କର ମୃତ୍ୟୁ ହେଲା । ତାଙ୍କର ଜଣେ ଭାଇ ଥିଲେ । ଭାଇ ଭଉଣୀଙ୍କ ମଧ୍ୟରେ ଗଭୀର ସ୍ନେହ ଥିଲା । କିନ୍ତୁ ଦୁର୍ଭାଗ୍ୟର କଥା ପିତାଙ୍କ ମୃତ୍ୟୁର କିଛି ଦିନ ପରେ ଭାଇଙ୍କର ମଧ୍ୟ ମୃତ୍ୟୁ ହେଲା । ବର୍ତ୍ତମାନ ସେ ପିତାଙ୍କ ସମସ୍ତ ସମ୍ପତ୍ତିର ଉତ୍ତରାଧିକାରିଣୀ । ମାତ୍ର ସେ ଭାଇଙ୍କର ମୃତ୍ୟୁରେ ଏତେ ଦୁଃଖିତ ଯେ ବିବାହ କରିବାକୁ ସେ ଆଦୌ ଇଚ୍ଛୁକ ନୁହନ୍ତି । ଏପରିକି ଭାଇଙ୍କ ମୃତ୍ୟୁପରେ କୌଣସି ପୁରୁଷର ମୁଖ ଦେଖିବେ ନାହିଁ ବୋଲି ପ୍ରତିଜ୍ଞା କରିଅଛନ୍ତି । ଅର୍ସିନୋ ଓଲିଭିଆଙ୍କୁ ପାଇବାର ଆଶା ଛାଡ଼ିନାହାନ୍ତି ସତ୍ୟ; କିନ୍ତୁ ଓଲିଭିଆ ତାଙ୍କୁ ସାକ୍ଷାତ ଦେବା ତ ଦୂରର କଥା, ତାଙ୍କର ଖବର ନେଇ ଯାଉଥିବା ଲୋକଙ୍କ ସଙ୍ଗେ କଥାବାର୍ତ୍ତା କରିବାକୁ ମଧ୍ୟ କୁଣ୍ଠିତ ।"

ଭାଇଓଲା ଏହି କଥା ଶୁଣି ମନେ ମନେ ଓଲିଭିଆଙ୍କୁ ପ୍ରଶଂସା କଲେ । ସେ ଭାବିଲେ ଯେ ଓଲିଭିଆ ମଧ୍ୟ ତାଙ୍କର ପରି ନିଜ ଭାଇକୁ

ଭଲ ପାଆନ୍ତି । ଉଭୟେ ନିଜ ନିଜର ଭାଇ ପାଇଁ ଝୁରୁଅଛନ୍ତି । ତେଣୁ ସେ କପ୍ତାନଙ୍କୁ କହିଲେ, "ଆପଣ ମୋର ଗୋଟିଏ ଉପକାର କରନ୍ତୁ । ମୋତେ ଓଲିଭିଆଙ୍କ ସହିତ ପରିଚୟ କରାଇ ଦିଅନ୍ତୁ । ମୁଁ ତାଙ୍କର ସେବା କରି ତାଙ୍କ ପାଖେ ରହିବି ।" କିନ୍ତୁ କପ୍ତାନ କହିଲେ, "ଏହା କରାଇପାରିବା ମୋ ପକ୍ଷରେ ଅସମ୍ଭବ । ଏବେ ମୋର ତାଙ୍କୁ ସାକ୍ଷାତ କରିବା ସମ୍ଭବପର ନୁହେଁ, ବିଶେଷତଃ ସେ ଯେ ଭ୍ରମକୁ ଗ୍ରହଣ କରିବେ ଏଥିପାଇଁ କୌଣସି ଆଶା ନାହିଁ ।" ତହୁଁ ଭାଓଲା କହିଲେ, "ତାହାହେଲେ ଆପଣ ମୋତେ ଅନ୍ୟ ପ୍ରକାରେ ସାହାଯ୍ୟ କରିପାରନ୍ତି । ଆପଣ ମୋପାଇଁ ଉପଯୁକ୍ତ ପୁରୁଷ ପୋଷାକ ଆଣାଇ ଦିଅନ୍ତୁ । ମୁଁ ପୁରୁଷ ବୋଲି ପରିଚୟ ଦେଇ ଡିଉକ୍ ଅର୍ସିନୋଙ୍କର ଭୃତ୍ୟରୂପେ କାର୍ଯ୍ୟ କରିବି । ମୋର ଏ ପ୍ରସ୍ତାବ ଶୁଣି ଆପଣ ବିସ୍ମିତ ହୋଇ ପାରନ୍ତି; କିନ୍ତୁ ମୋ ଭଳି ଜଣେ ସୁନ୍ଦରୀ ଯୁବତୀ ପକ୍ଷରେ, ଏଭଳି ଏକ ଅପରିଚିତ ରାଜ୍ୟରେ, ପୁରୁଷ-ବେଶରେ ଜୀବନଯାପନ କରିବା ଅପେକ୍ଷାକୃତ ନିରାପଦ ।"

କପ୍ତାନ ଦେଖିଲେ ଯେ ଭାଓଲଙ୍କର ପ୍ରସ୍ତାବ ଯୁକ୍ତିଯୁକ୍ତ । ସେ ଏହି ପ୍ରସ୍ତାବରେ ଏକମତ ହେବାରୁ ଭାଓଲା ତାଙ୍କୁ ଟଙ୍କା ଦେଇ କହିଲେ, "ଆପଣ ହିଁ ମୋର ଏକମାତ୍ର ସହାୟ । ମୋ ପାଇଁ ଯେଉଁ ପୋଷାକ ଆଣିବେ ତାହା ଯେପରି ଠିକ୍ ମୋ ଭାଇ ସେବାଷ୍ଟିଆନ୍‌ଙ୍କ ପୋଷାକ ଭଳି ହୁଏ ଓ ଠିକ୍ ସେହି ରଙ୍ଗର ହୁଏ, ଆଉ ଏହି ବିଷୟ ଯେପରି ଖୁବ୍ ଗୋପନ ରଖାଯାଏ ।"

ଯଥା ସମୟରେ କପ୍ତାନ ପୋଷାକ ଆଣି ଭାଓଲାଙ୍କୁ ଦେଲେ । ତାହାକୁ ପିନ୍ଧିବାରୁ ସେ ଠିକ ସେବାଷ୍ଟିଆନଙ୍କ ପରି ଦେଖାଗଲେ । ଏପରିକି ତାଙ୍କର ଅତି ପରିଚିତ ଲୋକେ ମଧ୍ୟ ତାଙ୍କୁ ଭାଓଲା ବୋଲି ଚିହ୍ନି ନପାରି ସେବାଷ୍ଟିଆନ ବୋଲି ମନେକରିଥାନ୍ତେ ।

ପୁରୁଷବେଶ ଧାରଣ କରି ଭାଓଲା ନିଜକୁ ସିଜାରିଓ ବୋଲି ପରିଚିତ କରାଇଲେ । କପ୍ତାନ ତାଙ୍କୁ ନେଇ ଡିଉକ୍‌ଙ୍କ ଦରବାରରେ ପହଞ୍ଚାଇଦେଲେ । ସିଜାରିଓ ପ୍ରାର୍ଥନା କଲେ ଯେ ସେ ଡିଉକଙ୍କର ପାର୍ଶ୍ୱଚର ଭାବରେ କାର୍ଯ୍ୟ କରିବାକୁ ଇଚ୍ଛୁକ । ଡିଉକ୍ ଦେଖିଲେ ଏହି ଯୁବକଟି ଦେଖିବାକୁ ଯେପରି ସୁନ୍ଦର, ତାହାର ଆଚାର-ବ୍ୟବହାର ଓ କଥାବାର୍ତ୍ତା ମଧ୍ୟ ସେପରି ଭଦ୍ରୋଚିତ । ତେଣୁ ସେ ତାଙ୍କୁ ଆନନ୍ଦରେ ନିଜର ଜଣେ ପାର୍ଶ୍ୱଚରରୂପେ ନିଯୁକ୍ତ କଲେ ।

ପୁରୁଷବେଶୀ ଭାଓଲା ନିଜର କାର୍ଯ୍ୟକୁ ଅତି ସୁନ୍ଦର ଭାବରେ ନିର୍ବାହ କଲେ ଓ ଅଳ୍ପଦିନ ମଧ୍ୟରେ ସେ ଡିଉକ୍‌ ଅର୍‌ସିନୋ-ଙ୍କର ଏକାନ୍ତ ପ୍ରିୟ ହୋଇପଡ଼ିଲେ । ସେ ଅନ୍ୟମାନଙ୍କ ନିକଟରେ ନିଜର ମନଖୋଲି କିଛି କହୁ ନ ଥିଲେ; କିନ୍ତୁ ସିଜାରିଓଙ୍କୁ ସେ ଏତେ ବିଶ୍ୱାସ କରୁଥିଲେ ଯେ ତାଙ୍କଠାରୁ କୌଣସି କଥା ଗୋପନ କରି ରଖୁନଥିଲେ । ସେ ଅନେକ ସମୟରେ ତାଙ୍କର ଓଲିଭିଆଙ୍କ ପ୍ରତି ଘୋର ଆକର୍ଷଣ ବିଷୟ ଓ ଓଲିଭିଆ କିପରି ତାଙ୍କର ସମସ୍ତ ପ୍ରେମନିବେଦନକୁ ପ୍ରତ୍ୟାଖ୍ୟାନ କରୁଥିଲେ, ତାହା ସିଜାରିଓଙ୍କୁ କହୁଥିଲେ । ସେ କହୁଥିଲେ, "ସିଜାରିଓ, ତୁମେ ମୋର ବିଶ୍ୱସ୍ତ ବନ୍ଧୁ । ଓଲିଭିଆଙ୍କୁ ନ ପାଇଲେ ମୋର ଜୀବନ ରହିବ ନାହିଁ । ମୁଁ ଜାଣେ, ସେ ମୋ ପ୍ରତି ଆଦୌ ଅନୁରକ୍ତା ନୁହନ୍ତି । ତାଙ୍କ ବିନା ମୋତେ ଏ ସଂସାର ବିଷପରି ଲାଗୁଛି ।"

ପାରିଷଦମାନେ ଦେଖିଲେ ଯେ ଡିଉକ୍ ଅର୍‌ସିନୋଙ୍କର ଜୀବନ ପରିବର୍ତ୍ତିତ ହୋଇଛି । ପୂର୍ବପରି ସେ କୌଣସି ଆମୋଦ-ପ୍ରମୋଦରେ ଯୋଗ ଦେଉ ନାହାନ୍ତି, ମୃଗୟାକୁ ବାହାରୁ ନାହାନ୍ତି, ବନ୍ଧୁମାନଙ୍କ ସହିତ ଆଳାପ କରୁନାହାନ୍ତି । କେବଳ କେବେ କେବେ ପ୍ରେମ-କବିତା ଶୁଣୁଛନ୍ତି ଏବଂ ଅନେକ ସମୟରେ

ସିଜାରିଓଙ୍କ ସହିତ ଗୋପନରେ କଥାବାର୍ତ୍ତା ହେଉଅଛନ୍ତି । ସେମାନେ ମନେକଲେ ଯେ ଡ୍ୟୁକ୍‌ଙ୍କ ପକ୍ଷରେ ଜଣେ ସାମାନ୍ୟ ଭୃତ୍ୟ ସହିତ ଏତେ ମିଳାମିଶା କରିବା ଅନୁଚିତ ।

ଭାଓଲା ଡ୍ୟୁକ୍‌ଙ୍କର ଏପରି ବିଶ୍ୱାସର ପାତ୍ର ହୋଇ ଦେଖିଲେ ଯେ ଦିନକୁ ଦିନ ତାଙ୍କ ନିଜର ଦୁଃଖ ବୃଦ୍ଧି ପାଇଛି ମାତ୍ର । ସେ ପୁରୁଷପରି ସମସ୍ତ କାର୍ଯ୍ୟ ସୁଚାରୁରୂପେ ସମ୍ପାଦନ କରୁଥିଲେହେଁ, ତାଙ୍କର ହୃଦୟର ଯୁବତୀସୁଲଭ ଗୁଣ ଲୋପପାଇନଥିଲା । ଅର୍ସିନୋ ଜଣେ ରୂପବାନ ଓ ଗୁଣବନ୍ତ ଯୁବକ । ତାଙ୍କ ନିକଟରେ କାର୍ଯ୍ୟ କରି ତାଙ୍କର ଓଲିଭିଆଙ୍କ ପ୍ରତି ପ୍ରେମର କାହାଣୀ ଶୁଣି ସେ ସ୍ୱତଃ ତାଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଲେ । ସେ ଭାବିଲେ ଏପରି ସୁନ୍ଦର ଯୁବକଙ୍କୁ ପାଇବା ଯେକୌଣସି ଯୁବତୀ ପକ୍ଷରେ ସୌଭାଗ୍ୟର କଥା । ତେବେ ଓଲିଭିଆ ଏହାଙ୍କୁ ଗ୍ରହଣ ନକରି ଘୃଣା କରୁଛନ୍ତି କାହିଁକି ?

ନିଜେ ଅର୍ସିନୋଙ୍କ ଗୁଣରେ ମୁଗ୍ଧ ହୋଇ ତାଙ୍କଠାରେ ଅଜ୍ଞାତସାରରେ ହୃଦୟ ଅର୍ପଣ କରିଥିଲେହେଁ ଭାଓଲା ତାଙ୍କୁ କହିଲେ "ଆଶ୍ଚର୍ଯ୍ୟର କଥା, ଆପଣ ଓଲିଭିଆଙ୍କୁ ଏତେ ଭଲପାଆନ୍ତି ଅଥଚ ସେ ଆପଣଙ୍କ ମହାନ୍ ଗୁଣର ପରିଚୟ ପାଇନାହାନ୍ତି କିମ୍ବା ଆପଣଙ୍କୁ ଭଲ ପାଉନାହାନ୍ତି । ଆପଣ ଓଲିଭିଆଙ୍କୁ ଯେତିକି ଭଲ ପାଆନ୍ତି, ଯଦି କୌଣସି ରମଣୀ ଆପଣଙ୍କୁ ସେତିକି ଭଲପାଏ—ହୁଏତ ଏପରି ରମଣୀ ନିଶ୍ଚୟ ଅଛନ୍ତି—ଏବଂ କୌଣସି କାରଣରୁ ଆପଣ ତାକୁ ଭଲ ନ ପାଆନ୍ତି, ତେବେ ଆପଣ କହିବେ, 'ନା, ମୁଁ ତୁମକୁ ଚାହେଁ ନାହିଁ ।' ଏହି ଉତ୍ତରରେ ସେ ସନ୍ତୁଷ୍ଟ ହେବା ଉଚିତ ନୁହେଁ କି ? ଓଲିଭିଆଙ୍କ କ୍ଷେତ୍ରରେ ସେହିପରି ଆପଣ ତାଙ୍କର 'ନାଁ' ଉତ୍ତରରେ ସନ୍ତୁଷ୍ଟ ହେବା ଉଚିତ ।"

ଅର୍‌ସିନୋ କୌଣସି ଯୁକ୍ତି ଶୁଣିବାକୁ ପ୍ରସ୍ତୁତ ନ ଥିଲେ । ସେ କହିଲେ, "ମୋର ପ୍ରେମର ଗମ୍ଭୀରତା ସଙ୍ଗେ କୌଣସି ନାରୀର ପ୍ରେମ ତୁଳନୀୟ ହୋଇ ନପାରେ । ନାରୀର ହୃଦୟରେ କ ଏତେ ପ୍ରେମ ରହିପାରେ ? ମୋର ପ୍ରେମ ସଙ୍ଗେ ଓଲିଭିଆଙ୍କର ପ୍ରେମ ତୁଳନା କରିବା ଅନୁଚିତ ।"

ଭାଓଲା ଜାଣିଥିଲେ ଯେ ଓଲିଭିଆଙ୍କ ପ୍ରତି ଅର୍‌ସିନୋଙ୍କ ପ୍ରେମ ଯେପରି ସୁଦୃଢ଼ ଓ ଗମ୍ଭୀର, ତାଙ୍କ ନିଜର ଅର୍‌ସିନୋଙ୍କ ପ୍ରତି ପ୍ରେମ ସେହିପରି ଦୃଢ଼ ଓ ଗମ୍ଭୀର । ତେଣୁ ସେ କହିଲେ, "ମହାଶୟ, ମୁଁ ଜାଣେ, ଆମେ ପୁରୁଷମାନେ ଯେପରି ନାରୀମାନଙ୍କୁ ପ୍ରେମ କରୁ, ନାରୀମାନେ ମଧ୍ୟ ପୁରୁଷମାନଙ୍କୁ ସେହିପରି ପ୍ରେମ କରିପାରନ୍ତି । ମୋର ଗୋଟିଏ ଭଉଣୀ ଥିଲା । ସେ ଜଣେ ଯୁବକକୁ ଅତ୍ୟନ୍ତ ଭଲ ପାଉଥିଲା । ମୁଁ ଯଦି ପୁରୁଷ ନ ହୋଇ ସ୍ତ୍ରୀ ହୋଇଥାନ୍ତି, ତେବେ ହୁଏତ ଆପଣଙ୍କୁ ସେହିପରି ଭଲ ପାଇଥାନ୍ତି ।"

ଅର୍‌ସିନୋ ଟିକିଏ ଆଗ୍ରହାନ୍ୱିତ ହୋଇ କହିଲେ, "ଆଚ୍ଛା, ତୁମର ସେହି ଭଉଣୀଟିର ପ୍ରେମକାହାଣୀ ମୋତେ କହିଲ ।" ଭାଓଲା ଉତ୍ତର ଦେଲେ, "ତାର ପ୍ରେମର କାହାଣୀ କହିବି କଅଣ ? ସେ କେବେହେଲେ ତାର ପ୍ରେମକଥା କାହାରି ଆଗେ କହି ନଥିଲା; କିନ୍ତୁ କୀଟ ପ୍ରଫୁଲ୍ଲ ପୁଷ୍ପକୁ କାଟିଲା ପରି ସେହି ପ୍ରେମ ତାର ଶରୀରକୁ କ୍ଷୀଣ କରିଦେଲା । ତାର ଗଣ୍ଡର ଗୋଲାପୀ ଆଭା କୁଆଡ଼େ ଉଭେଇଗଲା । ସେ ସର୍ବଦା ଚିନ୍ତାସାଗରରେ ବୁଡ଼ିରହିଲା । ଧୈର୍ଯ୍ୟର ପ୍ରତିମୂର୍ତ୍ତିଭଳି ବସିରହି ସେ ଦୁଃଖକୁ ଉପହାସ କରୁଥିଲା ।"

ଅର୍‌ସିନୋ ପଚାରିଲେ, "ଏହି ମହିଳା କଅଣ ଶେଷରେ ପ୍ରେମପାଇଁ ପ୍ରାଣ ହରାଇଲେ ?"

ଏତେବେଳଯାଏ ଷ୍ଟଓଲ୍ ନିଜର ଗୋପନ ପ୍ରେମ ଜଣାଇବା ଉଦ୍ଦେଶ୍ୟରେ ଏପରି କହୁଯାଉଥିଲେ । ବର୍ତ୍ତମାନ ସେ ଡଜକ୍ଙ୍କ ପ୍ରଶ୍ନର କି ଉତ୍ତର ଦେବେ, ତାହା ସ୍ଥିର କରିପାରିଲେ ନାହିଁ ।

ଏହି ସମୟରେ ଜଣେ ଭଦ୍ରବ୍ୟକ୍ତି ସେଠାରେ ଉପସ୍ଥିତ ହେଲେ । ଡଜକ ତାଙ୍କୁ ଓଲିଭିଆଙ୍କ ନିକଟକୁ ପଠାଇଥିଲେ । ସେ କହିଲେ, "ମହାଭାଗ, ମୁଁ ଓଲିଭିଆଙ୍କ ସାକ୍ଷାତ୍ ପାଇବାକୁ ଅନେକ ଯତ୍ନ କଲି; ମାତ୍ର ତାହା ହୋଇପାରିଲା ନାହିଁ । ନିଜର ଜଣେ ଭୃତ୍ୟ ଦ୍ୱାରା ସେ ସମ୍ବାଦ ପଠାଇଲେ, "ମୋର ଭାଇର ମୃତ୍ୟୁରେ ମୁଁ ଏପରି ଶୋକାର୍ତ୍ତ ହୋଇଅଛି ଯେ ଆଜିଠାରୁ ସାତବର୍ଷ ପର୍ଯ୍ୟନ୍ତ ମୁଁ କାହାରିକୁ ମୁଖ ଦେଖାଇବି ନାହିଁ । ମୁଁ ସନ୍ନ୍ୟାସିନୀ ଜୀବନ ଯାପନ କରିବି । ମୋର ଲୋତକରେ ଏହି ଗୃହକୁ ଧୌତ କରୁଥିବି ।"

ଡଜକ୍ ଏହି ସମ୍ବାଦ ପାଇ କହିଲେ, "ଯେଉଁ ରମଣୀର କୋମଳ ହୃଦୟ ଭ୍ରାତୃ-ସ୍ନେହରେ ଏପରି ବିଗଳିତ ହୋଇପାରେ, ତାର ପ୍ରେମ କି ଗଭୀର ନ ହେବ ? ସିଜାରିଓ ! ତୁମେ ମୋ ହୃଦୟର ସବୁକଥା ଜାଣ, ତୁମେ ମୋ ଲାଗି ଓଲିଭିଆଙ୍କ ଘରକୁ ଯାଅ । ନିଶ୍ଚୟ ଯେପରି ତାଙ୍କର ସାକ୍ଷାତ୍ ପାଅ । କହିବ, ସାକ୍ଷାତ୍ ନ ମିଳିବା ପର୍ଯ୍ୟନ୍ତ ମୁଁ ଏଠାରୁ ଘୁଞ୍ଚିବି ନାହିଁ ।"

ଭାଓଲା—ମନେ କରନ୍ତୁ ମୋର ସାକ୍ଷାତ୍ ହେଲା, ମୁଁ ସବୁ କଥା କହିଲି । ତାପରେ କଅଣ ହେବ ?

ଅର୍ସିନୋ—ମୁଁ ଯେ କିପରି ପ୍ରାଣଦେଇ ତାଙ୍କୁ ଭଲପାଏ ତାହା ଜଣାଇଦେବ । ମୋର ଦୁଃଖର କାହାଣୀ ତାଙ୍କ ନିକଟରେ ପ୍ରକାଶ କରିବ । କିପରି ଭାବରେ ଓ କିପରି ଭାଷାରେ ଏହା ପ୍ରକାଶ କରିବ, ତାହା ତୁମେ ଉତ୍ତମରୂପେ ଜାଣ । ମୋର ବିଶ୍ୱାସ, ତୁମଭଳି ଜଣେ ଯୁବକ ମୁଖରୁ ସେ ଏହି କଥା ଶୁଣିବାକୁ କୁଣ୍ଠିତ ହେବେ ନାହିଁ ।"

ସିଜାରଓବେଣୀ ସ୍ୱଓଲ ଡଉକ୍ତଙ୍କ ଆଦେଶ ପାଳନ କରିବାକୁ ବାଧ୍ୟହେଲେ; କିନ୍ତୁ ତାଙ୍କର ମନ ଏହି କାର୍ଯ୍ୟରେ ଆଦୌ ଲାଗୁ ନ ଥାଏ । ଯେଉଁ ଅର୍ଲିଏନୋଙ୍କୁ ସେ ନିଜ ମନେ ମନେ ପତିରୂପେ ବରଣ କରି ନେଇଅଛନ୍ତି, ତାଙ୍କୁ ବିବାହ କରିବା ପାଇଁ ସେ କିପରି ଓଲିଭିଆଙ୍କୁ ପ୍ରବର୍ତ୍ତାଇ ପାରିବେ ? କିନ୍ତୁ ଯେଉଁ କାର୍ଯ୍ୟର ଭାର ଗ୍ରହଣ କରିଛନ୍ତି ତାହା ସେ ନ କରିବେ ବା କିପରି ?

ଓଲିଭିଆଙ୍କୁ ଜଣେ ଭୃତ୍ୟ ଆସି କହିଲା, "ଜଣେ ଯୁବକ ଆପଣଙ୍କ ସହିତ ସାକ୍ଷାତ୍ କରିବାକୁ ଆସିଛନ୍ତି । ମୁଁ ତାଙ୍କୁ କହିଲି ଆପଣଙ୍କ ଦେହ ଭଲ ନାହିଁ, ତେଣୁ ଦେଖା ହୋଇ ପାରିବ ନାହିଁ । ତହୁଁ ସେ କହିଲେ, 'ମୁଁ ସେ କଥା ଜାଣିଛି । ସେଇଥି-ପାଇଁ ମୁଁ ତାଙ୍କ ସଙ୍ଗେ ଦେଖା କରିବାକୁ ଚାହେଁ ।' ପୁଣି ମୁଁ କହିଲି, ସେ ଶୋଇଛନ୍ତି, ଦେଖା ହେବ କିପରି ? ସେ କହିଲେ, 'ମୁଁ କଅଣ ତା ଜାଣେ ନାହିଁ ? ଟିକିକ ପରେ ତ ମୁଁ ଦେଖା କରିବି ।' ମୁଁ ତାଙ୍କୁ ଯାଇ କଅଣ କହିବି ? ସେ ବଡ଼ ଅଦ୍ଭୁତ ଲୋକ । ମୁଁ କଥାରେ ତାଙ୍କୁ ବଳିପାରିବି ନାହିଁ । ମନେ ଜଣାଯାଉଛି, ସେ ଆପଣଙ୍କୁ ସାକ୍ଷାତ୍ ନ କରି ଛାଡ଼ିବେ ନାହିଁ । ମନା କରିଦେଲେ ମଧ୍ୟ ସେ ଦୁଆରମୁହଁରୁ ଉଠିବେ ନାହିଁ ।"

ଓଲିଭିଆ ଏହି ବିଚିତ୍ର ଲୋକଟିକୁ ଦେଖିବାପାଇଁ କୌତୂହଳୀ ହୋଇ କହିଲେ, "ଆଚ୍ଛା, ତାକୁ ଡାକି ଆଣ ।" ସେ ନିଜର ମୁଖକୁ ଗୋଟିଏ ବସ୍ତ୍ରଦ୍ୱାରା ଆବୃତ କରି ବସିରହିଲେ । ତାଙ୍କର ଧାରଣା ହେଲା ଯେ ଏହି ସେହି ଲୋକଟି ଅର୍ସିନୋଙ୍କ ନିକଟରୁ ଆସିଥିବ । କିନ୍ତୁ ସମସ୍ତ ପୂର୍ବେ ତାଙ୍କର ଲୋକକୁ ଫେରାଇ ଦିଆଯାଇ ଥିଲା; ପୁଣି ଲୋକ ପଠାଇବାର ଉଦ୍ଦେଶ୍ୟ କଅଣ ?

ହାଓଲ୍ ଯଥାସମ୍ଭବ ସୁବକୋଚିତ ଆଚରଣ ଦେଖାଇ ଜଣେ ବଶିଷ୍ଟ ଡଜନ୍‌ଙ୍କ ପାଶ୍ଚାତର ଉପଯୁକ୍ତ ଭାଷାରେ କହିଲେ, "ଭଦ୍ରେ, ଆପଣ ସୌନ୍ଦର୍ଯ୍ୟରେ, ସମ୍ପତ୍ତିରେ ଅତୁଳନୀୟା ବୋଲି ଖ୍ୟାତ ଅଛି । ମୁଁ ଆପଣଙ୍କୁ ପ୍ରକୃତରେ ଓଲିଭିଆ ବୋଲି ଜାଣିଲେ ମୋର ବକ୍ତବ୍ୟ ପ୍ରକାଶ କରିବ । ଅନୁଗ୍ରହ କରି ଆପଣଙ୍କ ମୁଖର ଆବରଣ ଉନ୍ମୋଚନ କରନ୍ତୁ । ମୋର ବକ୍ତବ୍ୟ କେବଳ ଆପଣଙ୍କ ପାଇଁ ଅଭିପ୍ରେତ । ଏହା ଉତ୍ତମ ଭାଷାରେ ଲେଖାଯାଇଛି ଓ ମୁଁ ତାହା ମୁଖସ୍ଥ କରି ଆସିଛି । ଅନ୍ୟ କେହି ଯେପରି ତାହା ନ ଶୁଣେ, ସେଥିପାଇଁ ମୋର ଏ ଅନୁରୋଧ ଯେ ଆପଣ ମୁଖର ଆବରଣ ଉନ୍ମୋଚନ କରନ୍ତୁ ।"

ଓଲିଭିଆ ପ୍ରଶ୍ନ କଲେ, "ଆପଣ କାହା ପାଖରୁ ଆସିଛନ୍ତି ?"

ହାଓଲ୍ ଉତ୍ତର କଲେ, 'ମୁଁ ଯେତିକ ଶିଖିଛି ତାହା ଅପେକ୍ଷା ଅଧିକ କହି ପାରିବ ନାହିଁ ।"

ଓଲିଭିଆ—ତେବେ ଆପଣ କଅଣ ବିଦୂଷକର ଅଭିନୟ କରିବାକୁ ଆସିଛନ୍ତି ?

ହାଓଲ୍—ନାଁ, ମୁଁ ବିଦୂଷକ ନୁହେଁ । ତେବେ ମୁଁ ପ୍ରକୃତରେ ଯାହା ନୁହେଁ, ତାହାର ଅଭିନୟ କରୁଛି ।

ହାଓଲ୍‌ଙ୍କର ଏପରି କହିବାର ଉଦ୍ଦେଶ୍ୟ ଥିଲା ଯେ ସେ ପ୍ରକୃତରେ ପୁରୁଷ ନ ହେଲେହେଁ ପୁରୁଷପର ଅଭିନୟ କରୁଅଛନ୍ତି । ମାତ୍ର ଓଲିଭିଆ ଏହି ଉଦ୍ଦେଶ୍ୟ ବୁଝିପାରିଲେ ନାହିଁ ।

ହାଓଲ୍ ପୁଣି ପ୍ରଶ୍ନ କଲେ—ଆପଣ କଅଣ ପ୍ରକୃତରେ ଓଲିଭିଆ ?

ଓଲିଭିଆ ଉତ୍ତର କଲେ—ହଁ ।

ଷୀଫେନ୍ ନିଜେ ଅର୍ସିନୋଙ୍କୁ ଭଲ ପାଉଥିଲେ; ମାତ୍ର ଅର୍ସିନୋ ଓଲଭିଆଙ୍କୁ ଭଲ ପାଉଥିଲେ । ଏହି ଦୃଷ୍ଟିରୁ ଷୀଫେନ୍ ଓ ଓଲଭିଆ ପରସ୍ପରର ପ୍ରତିଦ୍ୱନ୍ଦ୍ୱିନୀ । ନିଜ ସଙ୍ଗେ ତୁଳନା କରିବା ପାଇଁ ଷୀଫେନ୍ ଓଲଭିଆଙ୍କ ମୁଖର ସୌନ୍ଦର୍ଯ୍ୟ ଦେଖିବାକୁ ଅଧୀର ହୋଇପଡ଼ିଥିଲେ । ସେ କହିଲେ "ଆପଣ ଯଦି ଓଲିଭିଆ, ତେବେ ଆପଣଙ୍କର ମୁଖରୁ ଆବରଣ ଉନ୍ମୋଚନ କରି ମୋର ସଂଶୟ ଦୂର କରନ୍ତୁ ।"

ଓଲଭିଆ ଯୁବକଙ୍କର ଏହି ଅନୁରୋଧକୁ ଉପେକ୍ଷା କରି ପାରିଲେ ନାହିଁ । ସେ ମୁଖର ଆବରଣ କାଢ଼ିଦେଲେ ଓ ସିଜାରିଓ ନାମଧାରୀ ଷୀଫେନ୍‌ଙ୍କୁ ଦେଖିବା ମାତ୍ରେ ସେ ତାଙ୍କୁ ହୃଦୟ ମଧ୍ୟରେ ସ୍ଥାନ ଦେଲେ । ଚାରି ଚକ୍ଷୁର ମିଳନ ହେଲାକ୍ଷଣି ଓଲିଭିଆଙ୍କ ହୃଦୟରେ ଏହି ଛଦ୍ମବେଶୀ ଯୁବକଙ୍କ ପ୍ରତି ପ୍ରେମର ସଞ୍ଚାର ହେଲା । ସାତ ବର୍ଷ ପର୍ଯ୍ୟନ୍ତ କୌଣସି ଲୋକର ମୁଖାବଲୋକନ କରିବେ ନାହିଁ ବୋଲି ସେ ଯେଉଁ ପ୍ରତିଜ୍ଞା କରିଥିଲେ, ତାହା କୁଆଡ଼େ ଉଡ଼ିଗଲା ।

ପର୍ଦ୍ଦା ଅନ୍ତରାଳରେ ଉଭୟଙ୍କ ମଧ୍ୟରେ କଥାବାର୍ତ୍ତା ଚାଲିଲା । ଷୀଫେନ୍ କହିଲେ, "ଆପଣଙ୍କ ସୌନ୍ଦର୍ଯ୍ୟର ତୁଳନା ନାହିଁ । ଆପଣଙ୍କ ଗଣ୍ଡଦେଶରେ ଗୋଲାପି ଆଭା ପ୍ରକୃତି ଦେବୀଙ୍କର ବିଶିଷ୍ଟ ଦାନ । ମୋର ମନେ ହୁଏ, ଆପଣଙ୍କ ସୌନ୍ଦର୍ଯ୍ୟର ଯେପରି ତୁଳନା ନାହିଁ, ଆପଣଙ୍କ ନିର୍ଦ୍ଦୟତାର ମଧ୍ୟ ସେହିପରି ତୁଳନା ନାହିଁ । ଯଦି ଏହି ସୌନ୍ଦର୍ଯ୍ୟ ଆପଣଙ୍କ ଜୀବନ ସଙ୍ଗେ ଲୋପ ପାଏ, ତେବେ ଜଗତରେ ତାର ସ୍ମୃତି ରହିବ ନାହିଁ ।"

ଓଲଭିଆ ଏହା ଶୁଣି କହିଲେ, "ଭଦ୍ର, ଆପଣଙ୍କର ଏପରି ଆଶଙ୍କା ବୃଥା । ଜଗତ ମୋର ରୂପର ଗୋଟିଏ ତାଲିକା ପ୍ରସ୍ତୁତ କରି ରଖିପାରେ—ଯଥା, ପ୍ରଥମ—ଦୁଇଟି ଈଷତ୍ ରକ୍ତିମ

ଓଷ୍ଠ; ଦ୍ୱିଖଣ୍ଡ—ଦୁଇଟି ନୀଳ ଚକ୍ଷୁ ଓ ତାର ଆବରକ ପତ୍ର; ଗୋଟିଏ ଗଳା, ଗୋଟିଏ ଚିବୁକ ଇତ୍ୟାଦି । ତେବେ କେବଳ ମୋର ରୂପର ପ୍ରଶଂସା କରିବାକୁ ଆପଣଙ୍କୁ ପଠାହୋଇଛି ?"

ଭାଓଲା ଉତ୍ତର କଲେ,"ମୁଁ ଦେଖୁଛି, ଆପଣ ଯେତିକ ସୁନ୍ଦରୀ, ସେତିକ ଅଭିମାନିନୀ । ମୋର ପ୍ରଭୁ ଡିଉକ୍ ଅର୍ସିନୋ ଆପଣଙ୍କୁ ଭଲ ପାଆନ୍ତି । ଆପଣ ସୌନ୍ଦର୍ଯ୍ୟରାଜ୍ୟର ରାଣୀ ହେଲେହେଁ ତାଙ୍କ ପ୍ରେମର ପ୍ରତିଦାନ ଦେବା ଉଚିତ । ସେ ଆପଣଙ୍କୁ ହୃଦୟ-ବେଦୀରେ ପ୍ରତିଷ୍ଠା କରି ପୂଜା କରୁଛନ୍ତି, ଅଶ୍ରୁଜଳରେ ଅର୍ଘ୍ୟ ଦେଉଛନ୍ତି ।"

ଓଲିଭିଆ ଉତ୍ତର କଲେ, ଆପଣଙ୍କ ପ୍ରଭୁ ଭଲରୂପେ ମୋର ମନକଥା ଜାଣିଛନ୍ତି । ମୁଁ କଦାପି ତାଙ୍କୁ ଭଲ ପାଇ ନ ପାରେ । ତେବେ ମୁଁ ଜାଣେ ସେ ଗୁଣବାନ୍, ଉଦାର, ଧନୀ, ମାନୀ । ତାଙ୍କର ଚରିତ୍ର ନିଷ୍କଳଙ୍କ । ସମସ୍ତେ କହନ୍ତି ସେ ଜ୍ଞାନୀ, ନମ୍ର ଓ ବୀର । ତଥାପି ମୁଁ ତାଙ୍କୁ ଭଲପାଇ ନ ପାରେ । ସେ ମୋର ଏହି ଉତ୍ତର ବହୁ ପୂର୍ବରୁ ପାଇସାରିଛନ୍ତି ।"

ଭାଓଲା କହିଲେ, "ମୁଁ ଯଦି ମୋର ପ୍ରଭୁଙ୍କ ପରି ଆପଣଙ୍କୁ ଭଲ ପାଉଥାନ୍ତି, ତେବେ ମୁଁ ଆପଣଙ୍କ ଦ୍ୱାର ନିକଟରେ ଗୋଟିଏ କୁଟୀର ରଚନା କରି ଆପଣଙ୍କ ନାମ ଉଚ୍ଚାରଣ କରୁଥାନ୍ତି; ଓଲିଭିଆଙ୍କ ନାମରେ କବିତା ରଚନା କରି ରାତିରେ ଗାଉଥାନ୍ତି; ଆପଣଙ୍କ ନାମ ପର୍ବତରେ ପ୍ରତିଧ୍ୱନିତ ହେଉଥାନ୍ତା ।

ଓଲିଭିଆ—ଆପଣ ଏସବୁ କରିପାରନ୍ତି । ଆଚ୍ଛା, ଆପଣ କେଉଁ ବଂଶରେ ଜାତ ହୋଇଛନ୍ତି ?

ଭାଓଲା—ମୋତେ ଆପଣ ଯାହା ଦେଖୁଛନ୍ତି, ତାହାଠାରୁ ମୋର ବଂଶ-ଗୌରବ ଯଥେଷ୍ଟ ଉଚ୍ଚ । ମୁଁ ଏତିକ କହିପାରେ ଯେ ମୁଁ ଜଣେ ଭଦ୍ରସନ୍ତାନ ।

ଓଲାଭଆ କିଛିକ୍ଷଣ ଚିନ୍ତା କରି କହିଲେ, "ଆପଣ ବିଦାୟ ନିଅନ୍ତୁ । ଆପଣଙ୍କ ପ୍ରଭୁଙ୍କୁ କହିଦେବେ, ମୁଁ କେତେବେଳେ ତାଙ୍କୁ ଭୁଲି ପାଇ ନ ପାରେ । ତାଙ୍କୁ କହିଦେବେ, ସେ ମୋ ପାଖକୁ ଆଜି କାହାରିକି ପଠାଇବେ ନାହିଁ । ଆପଣଙ୍କଠାରୁ ମୋର ଉତ୍ତର ଶୁଣି ସେ କି ଭାବ ପ୍ରକାଶ କରିବେ, ତାହା ଆପଣ ମୋତେ ଜଣାଇପାରିଲେ ମୁଁ ଆପ୍ୟାୟିତ ହେବି ।"

ସାଓଲ ବିଦାୟ ନେଇ ଚାଲିଗଲେ ।

ଓଲାଭଆ ଚିନ୍ତା କରିବାକୁ ଲାଗିଲେ—'ମୋର ବଂଶଗୌରବ ଯଥେଷ୍ଟ ଉଚ୍ଚ, ମୁଁ ଜଣେ ଭଦ୍ରସନ୍ତାନ ।' ସେ ଯାହା କହିଲେ ତାହା ସତ୍ୟ । ତାଙ୍କର ମୁଖ, ଅଙ୍ଗପ୍ରତ୍ୟଙ୍ଗ, ଭାବଭଙ୍ଗୀ, ଭାଷା ସବୁ ଭଦ୍ର-ସନ୍ତାନର ପରିଚୟ ଦେଉଅଛି । ଏହି ଯୁବକ ସିଜାରିଓ ଯଦି ଜଣେ ଉଜିକ୍ ହୋଇଥାନ୍ତେ, ତେବେ ମୁଁ କି ଆନନ୍ଦ ଲାଭ କରିନଥାନ୍ତି ।" ଏହାପରେ ସେ ଏପରି ହଠାତ୍ ଏହି ଯୁବକଙ୍କ ନିକଟରେ ଆତ୍ମ-ସମର୍ପଣ କରିଥିବାରୁ ନିଜକୁ ଧିକ୍କାର କରିବାକୁ ଲାଗିଲେ ।

ଓଲାଭଆ ନିଜକୁ ସମ୍ପୂର୍ଣ୍ଣରୂପେ ଭୁଲିଗଲେ । ଯୁବକଙ୍କର କୁଳଶୀଳ ଚିନ୍ତା କରିବାକୁ ନ ଯାଇ ସେ ତାଙ୍କୁ ନିଜର ପ୍ରେମ ନିବେଦନ କରିବାକୁ ସ୍ଥିର କଲେ । ସେ ନିଜର ଭୃତ୍ୟଦ୍ୱାରା ଗୋଟିଏ ହୀରକ ଅଙ୍ଗୁରୀୟ ସିଜାରିଓଙ୍କ ନିକଟକୁ ପଠାଇ ଦେଇ ଭୃତ୍ୟକୁ କହିଲେ, "ଏହି ମୁଦିକାଟି ଅର୍ସିନୋ ମୋ ନିକଟକୁ ତାଙ୍କ ହାତରେ ପଠାଇଥିଲେ । ସେଇଟି ଫେରାଇ ନେବେ ।" ଓଲାଭଆ ଭାବିଥିଲେ ଯେ ସିଜାରିଓ ଏଥିରୁ ତାଙ୍କର ମନୋଭାବ ବୁଝିପାରିବେ ଓ ତାଙ୍କର ପ୍ରେମର ସଙ୍କେତ ଗ୍ରହଣ କରିବେ ।

ଭୃତ୍ୟଠାରୁ ସାଓଲ ମୁଦିକାଟି ଗ୍ରହଣ କଲେ । ଏଥିରୁ ସେ ସ୍ପଷ୍ଟ ବୁଝିପାରିଲେ ଯେ ଓଲାଭଆ ତାଙ୍କୁ ହୃଦୟରେ ସ୍ଥାନ ଦେଇ-

ଅଛନ୍ତି । ସେ ମନେ ମନେ କହିଲେ, "ହାୟ ! ଓଲିଭିଆ କି ଭ୍ରମରେ ପଡ଼ିଛନ୍ତି ! ମୋତେ ପତିରୂପେ ପାଇବା ତାଙ୍କର ଇଚ୍ଛା; କିନ୍ତୁ ଏହା ଯେ ଏକ ମରୀଚିକା । ଏହା ପଛରେ ଧାଇଁ ଓଲିଭିଆଙ୍କର ଜୀବନ ଦୁଃଖମୟ ହେବ । ମୁଁ ଯେପରି ଅର୍ସିନୋଙ୍କୁ ହୃଦୟରେ ସ୍ଥାନ ଦେଇ କେବଳ ବ୍ୟାକୁଳ ହେଉଅଛି, ଓଲିଭିଆ ମଧ୍ୟ ସେହିପରି ହେବେ । ଏସବୁର ଏକ ମାତ୍ର କାରଣ ହେଉଛି ମୋର ଏହି କୃତ୍ରିମ ପୁରୁଷବେଶ ।"

ଭାଓଲା ଅର୍ସିନୋଙ୍କ ପ୍ରାସାଦକୁ ଫେରିଆସି ତାଙ୍କୁ ଓଲିଭିଆଙ୍କର ନାସ୍ତି ବାଣୀ ଶୁଣାଇଲେ; କିନ୍ତୁ ଅର୍ସିନୋ ଏଥିରେ ନିରାଶ ହୋଇ ରହିଲେ ନାହିଁ । ତାଙ୍କର ବିଶ୍ୱାସ ଥିଲା ଯେ ଏହି ସିଜାରିଓଙ୍କ ଦ୍ୱାରା ହିଁ ତାଙ୍କର ଉଦ୍ଦେଶ୍ୟ ସିଦ୍ଧ ହେବ । ସେ ଚେଷ୍ଟା-କଲେ ଓଲିଭିଆ ତାଙ୍କପ୍ରତି ସୁଦୃଷ୍ଟି ପକାଇବେ । ତେଣୁ ସେ ତପର ଦିନ ପୁନର୍ବାର ଓଲିଭିଆଙ୍କ ନିକଟକୁ ଯିବାପାଇଁ ତାଙ୍କୁ ଅନୁରୋଧ କଲେ ।

ଏହି ସମୟରେ ଅର୍ସିନୋ ମନ ପରିବର୍ତ୍ତନ ପାଇଁ ଜଣେ ଗାୟକକୁ ତାଙ୍କର ଗୋଟିଏ ଅତି ପ୍ରିୟ ପ୍ରେମ-ସଙ୍ଗୀତ ଗାଇବାକୁ କହିଲେ । ଗାୟକ ମଧୁର ସ୍ୱରରେ ସଙ୍ଗୀତଟି ଗାଇଲା । ଏଥିରେ ଜଣେ ପ୍ରେମିକା କିପରି ତାହାର ପ୍ରେମିକର ପ୍ରତ୍ୟାଖ୍ୟାନରେ ଦୁଃଖ ଅନୁଭବ କରୁଥିଲା, ତାହା କରୁଣ ଭାବରେ ବର୍ଣ୍ଣିତ ହୋଇଥିଲା । ସିଜାରିଓ ଏହି ସଙ୍ଗୀତଟି ଶୁଣିଲାବେଳେ ତାଙ୍କର ଆଖି ଛଳଛଳ ହୋଇଯାଉଥିଲା । ଅର୍ସିନୋ ଏହା ଲକ୍ଷ୍ୟକରି କହିଲେ, "ସିଜାରିଓ, ବୟସରେ ତୁମେ ବାଳକ ମାତ୍ର; କିନ୍ତୁ ମୁଁ ନିଶ୍ଚୟ କରି କହିପାରେ ଯେ ତୁମେ କୌଣସି ରମଣୀର ପ୍ରେମରେ ପଡ଼ିଅଛ । କିପରି ସେ ରମଣୀ ? ତାର ବୟସ କେତେ ?" ଭାଓଲା ଉତ୍ତର

କଲେ, "ଦେହର ରଙ୍ଗ ଓ ଚେହେରାରେ ସେ ଠିକ୍ ଆପଣଙ୍କ ପରି । ବୟସରେ ମଧ୍ୟ ଆପଣଙ୍କର ସମାନ ହେବ ।" ଏପରି କହିଲାବେଳେ ଭାଓଲା ସ୍ୱୟଂ ଅର୍‌ସିନୋଙ୍କୁ ଲକ୍ଷ୍ୟ କରିଥିଲେ । କିନ୍ତୁ ଅର୍‌ସିନୋ ତାହା ବୁଝିନପାରି ଭାବିଲେ ଯେ ସିଜାରିଓ ଏତେ ଅଳ୍ପବୟସର ଯୁବକ; ଅଥଚ ସେ ନିଜଠାରୁ ବେଶି ବୟସର ଓ ପୁରୁଷଭଳି ଶ୍ୟାମବର୍ଣ୍ଣର ଜଣେ ସ୍ତ୍ରୀକୁ ଭଲ ପାଉଛି । ତେଣୁ ତାଙ୍କ ମୁହଁରେ ହସ ଦେଖାଦେଲା ।

ଭାଓଲା ଯେତେବେଳେ ଦ୍ୱିତୀୟ ଥର ପାଇଁ ଓଲିଭିଆଙ୍କୁ ସାକ୍ଷାତ୍ କରିବାକୁ ଗଲେ, ସେତେବେଳେ ତାଙ୍କୁ କୌଣସି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା ନାହିଁ । ଦାସୀମାନେ ତାଙ୍କୁ ଆଦର ଓ ସମ୍ମାନସହକାରେ ନେଇ ଓଲିଭିଆଙ୍କର କକ୍ଷରେ ପହଞ୍ଚାଇଦେଲେ । ଭାଓଲା କହିଲେ, ସେ ପୁଣି ନିଜର ପ୍ରଭୁଙ୍କ ଅଭିଳାଷ ଜଣାଇ-ବାକୁ ଆସିଅଛନ୍ତି । ତହୁଁ ଓଲିଭିଆ ଉତ୍ତର କଲେ, "ତାଙ୍କର କୌଣସି ଆବେଦନ ଶୁଣିବା ମୋର ଇଚ୍ଛା ନୁହେଁ ବୋଲି ମୁଁ ଆଗରୁ କହିସାରିଛି । କିନ୍ତୁ ଆପଣ ଯଦି ଅନ୍ୟ କାହାରି ଆବେଦନ ଜଣାନ୍ତି ତେବେ ତାହା ଶୁଣିଲେ ମୁଁ ସ୍ୱର୍ଗୀୟ ସଙ୍ଗୀତ ଶୁଣିଲା ପରି ଆନନ୍ଦ ଅନୁଭବ କରିବି ।" ଏତିକରେ କାଳେ ସିଜାରିଓ ତାଙ୍କର ଉଦ୍ଦେଶ୍ୟ ବୁଝିପାରି ନଥିବେ, ସେଥିପାଇଁ ସେ ସ୍ପଷ୍ଟ ଭାଷାରେ ଜଣାଇ ଦେଲେ ଯେ ସେ ତାଙ୍କୁ ନିଜ ହୃଦୟରେ ସ୍ଥାନ ଦେଇଛନ୍ତି । ଏହା ଶୁଣିଲାକ୍ଷଣି ଭାଓଲାଙ୍କ ମୁଖମଣ୍ଡଳରେ କ୍ରୋଧ ଓ ବିଷାଦର ଛାୟା ଦେଖାଗଲା । ଓଲିଭିଆ ଏହା ଦେଖି କହିଲେ, "ଆପଣଙ୍କର ବିରକ୍ତି ଓ ଘୃଣା ମଧ୍ୟ ଆପଣଙ୍କର ମୁଖମଣ୍ଡଳକୁ ଅଧିକ ସୁନ୍ଦର କରିଦେଉଛି । ସିଜାରିଓ, ମୁଁ ଶପଥ କରି କହୁଛି, ଆପଣ ଯେତେ ଅଭିମାନ କରନ୍ତୁ, କ୍ରୋଧ

କରନ୍ତୁ, ବରଂ ହସନ୍ତୁ ପଛକେ ମୁଁ ଆପଣଙ୍କ ଯେ ଭଲପାଏ ତାହା ଲୁଚାଇ ରଖିବାର ଶକ୍ତି ବା ବୁଦ୍ଧି ମୋର ନାହିଁ ।”

ଗ୍ରେଭିଲ ଏହି କଥାରେ ଏପରି ବିଚଳିତ ହୋଇପଡ଼ିଲେ ଯେ ସେ ଓଲିଭିଆଙ୍କ କକ୍ଷ ତ୍ୟାଗକରି ଚାଲିଗଲେ । ଯିବା ସମୟରେ କହିଲେ, “ମୁଁ ଆଉ କେବେ ହେଲେ ମୋ ପ୍ରଭୁଙ୍କର ପ୍ରେମନିବେଦନ ଜଣାଇବା ପାଇଁ ଆପଣଙ୍କ ନିକଟକୁ ଆସିବି ନାହିଁ । ଆହୁରି ମୋର ଆଜିଠାରୁ ପ୍ରତିଜ୍ଞା ହେଉଛି—କୌଣସି ରମଣୀକୁ ପ୍ରେମ କରିବି ନାହିଁ ।”

ଓଲିଭିଆଙ୍କ ନିକଟରୁ ଫେରିଯାଉଥିବା ବେଳେ ପଥ ମଧ୍ୟରେ ଗ୍ରେଭିଲଙ୍କର ଜଣେ ଯୁବକଙ୍କ ସହିତ ଦେଖାହେଲା । ଏହି ଯୁବକ ଓଲିଭିଆଙ୍କର ପ୍ରଣୟପ୍ରାର୍ଥୀ ଥିଲେ । କିନ୍ତୁ ଓଲିଭିଆ ତାଙ୍କ ପ୍ରତ୍ୟାଖ୍ୟାନ କରିଥିଲେ । ସେ ଶୁଣିପାରିଥିଲେ ଓଲିଭିଆ ଏହି ଯୁବକଙ୍କୁ ଆଦର ପ୍ରଦର୍ଶନ କରୁଅଛନ୍ତି । ତେଣୁ ସେ ଈର୍ଷା କରି ସିଜାରିଓଙ୍କ ସହିତ ଦ୍ୱନ୍ଦ୍ୱ ଯୁଦ୍ଧ କରିବାକୁ ଇଚ୍ଛା ପ୍ରକାଶ କଲେ । ପୁରୁଷବେଶୀ ଗ୍ରେଭିଲ ଏବେ ସଙ୍କଟରେ ପଡ଼ିଲେ । ସେ ପୁରୁଷର ବେଶଭୂଷା ପରିଧାନ କରିଥିଲେ, କଟିରେ ତାଙ୍କର ତରବାରି ଥିଲା; କିନ୍ତୁ ଏଥିହାରା ତାଙ୍କର ହୃଦୟରେ ପୁରୁଷୋଚିତ ସାହସ ଆସିବ କାହିଁ ?

ଯୁବକଟି ଯେତେବେଳେ କୋଷମୁକ୍ତ କୃପାଣ ଧରି ତାଙ୍କୁ ଦ୍ୱନ୍ଦ୍ୱଯୁଦ୍ଧ ନିମନ୍ତେ ଆହ୍ୱାନ କଲା ସେତେବେଳେ ସେ ପୁରୁଷ ନୁହନ୍ତି ବୋଲି ସ୍ୱୀକାର କରି ଆତ୍ମରକ୍ଷା କରିବାକୁ ଭାବିଲେ । କିନ୍ତୁ ଦୈବକ୍ରମେ ଜଣେ ଅପରିଚିତ ଭଦ୍ରବ୍ୟକ୍ତି ସେଠାରେ ଉପସ୍ଥିତ ହୋଇ ତାଙ୍କୁ ଏହି ଆପଦରୁ ପରିତ୍ରାଣ କରି ଉଦ୍ଧାର କଲେ । ସେ ଯୁବକର ସମ୍ମୁଖୀନ ହୋଇ କହିଲେ, “ଏହି ଯୁବକ ଯଦି କୌଣସି

ଅପରାଧ କରିଅଛନ୍ତି, ତେବେ ତାଙ୍କ ପାଇଁ ମୁଁ ଦୋଷ ସ୍ୱୀକାର କରିନେବାକୁ ପ୍ରସ୍ତୁତ । କିନ୍ତୁ ତୁମେ ଯଦି ତାଙ୍କୁ ଅପମାନିତ କର, ତାହାହେଲେ ମୁଁ ପ୍ରତିଶୋଧ ନେବାକୁ ଦଣ୍ଡାୟମାନ ।"

ଘାଓଲି ଜଣେ ଅପରିଚିତ ଭଦ୍ରବ୍ୟକ୍ତିଙ୍କର ଏହି ଅଯାଚିତ ଦୟା ନିମନ୍ତେ ତାଙ୍କୁ ଧନ୍ୟବାଦ ଦେବାକୁ ଯାଉଅଛନ୍ତି, ଏହି ସମୟରେ କେତେଜଣ ରାଜକର୍ମଚାରୀ ସେଠାରେ ଉପସ୍ଥିତ ହୋଇ ଏହି ଭଦ୍ରବ୍ୟକ୍ତିଙ୍କୁ ବନ୍ଧନ କରି କହିଲେ, "ତୁମେ କେତେକ ବର୍ଷ-ତଳେ ଏକ ଅପରାଧ କରି ପଳାୟନ କରିଥିଲ । ଏବେ ଉଜିର୍‌ଙ୍କର ଆଦେଶ, ତୁମର ବିଚାର ହେବ ।"

ଭଦ୍ରବ୍ୟକ୍ତି ଘାଓଲିଙ୍କୁ କହିଲେ, "ତୁମର ସନ୍ଧାନ ନେବାକୁ ଆସି ମୁଁ ଏ ବିପଦରେ ପଡ଼ିଲି । ଯାହା ହେଉ, ମୋତେ ମୋର ଟଙ୍କାଥଳୀଟି ଦିଅ । ମୋର ଟଙ୍କା ନିତାନ୍ତ ଦରକାର । ମୁଁ ଯେ ତୁମକୁ ବିଶେଷ ସାହାଯ୍ୟ କରିପାରୁନାହିଁ, ସେଥିପାଇଁ ଅତ୍ୟନ୍ତ ଦୁଃଖିତ । ମୋ ନିଜ ପାଇଁ ମୁଁ ସେତେ ଦୁଃଖିତ ନୁହେଁ । ଚିନ୍ତା ବା ଚକିତ ହେବାର କାରଣ ନାହିଁ । ଧୈର୍ଯ୍ୟ ଧାରଣ କର ।"

ଘାଓଲି ଏହି କଥା ଶୁଣି ବାସ୍ତବରେ ବିସ୍ମିତ ହୋଇଯାଇଥିଲେ । ସେ କହିଲେ, "ଆପଣଙ୍କ ସହିତ ମୋର ପରିଚୟ ନୁହଁ ନାହିଁ । ମୁଁ ଆପଣଙ୍କର ଟଙ୍କାଥଳୀ ବିଷୟରେ ମଧ୍ୟ କିଛି ଜାଣେ ନାହିଁ; କିନ୍ତୁ ଆପଣ ମୋ ପ୍ରତି ଯେଉଁ ଅନୁଗ୍ରହ ପ୍ରଦର୍ଶନ କରିଅଛନ୍ତି, ସେଥିପାଇଁ ମୁଁ ଆପଣଙ୍କୁ ସାମାନ୍ୟ ଅର୍ଥ ପ୍ରଦାନ କରୁଅଛି ।" ଏହା କହି ଘାଓଲି ତାଙ୍କ ନିକଟରେ ଥିବା ଟଙ୍କା ଭଦ୍ରବ୍ୟକ୍ତିଙ୍କ ହାତକୁ ବଢ଼ାଇ-ଦେଲେ ।

ଉକ୍ତ ଭଦ୍ରବ୍ୟକ୍ତି କ୍ରୁଦ୍ଧ ହୋଇ ଉପସ୍ଥିତ ରାଜକର୍ମଚାରୀ-ମାନଙ୍କୁ କହିଲେ, "ଦେଖନ୍ତୁ, ଏହି ଯୁବକଟା କେଡ଼େ କୃତଘ୍ନ,

କେତେ ଅବଶ୍ୟମ୍ଭାବୀ । ମୁଁ ଏହାଙ୍କୁ ମୃତ୍ୟୁମୁଖରୁ ଉଦ୍ଧାର କରି ଛଅ ମାସ ପର୍ଯ୍ୟନ୍ତ ପାଖରେ ଆଶ୍ରୟ ଦେଲି । ଏହାଙ୍କ ସକାଶେ ମୁଁ ଇଂଲଣ୍ଡକୁ ଆସି ଏ ବିପଦରେ ପଡ଼ିଲି । ଏବେ ସେ ମୋର ଉପକାରିତାର ମୂଲ୍ୟ ଫେରାଇ ଦେବାକୁ ଏପରି କୁଣ୍ଠିତ ।"

ରାଜକର୍ମଚାରୀମାନେ ସେହି ଭଦ୍ରବ୍ୟକ୍ତିଙ୍କର ଏସବୁ କଥା ପ୍ରତି କର୍ଣ୍ଣପାତ ନ କରି କହିଲେ, "ଆମର ସେସବୁ ଶୁଣିବା ପ୍ରୟୋଜନ ନାହିଁ ।" ତାଙ୍କୁ ରାଜକର୍ମଚାରୀମାନେ ବଳପୂର୍ବକ ଧରିନେଲାବେଳେ ସେ କହିଲେ, "ସେବାଷ୍ଟିଆନ୍, ତୁମର କୃତଘ୍ନତା ନିମନ୍ତେ ଈଶ୍ୱର ତୁମକୁ କ୍ଷମା କରିବେ ନାହିଁ । ଉପକାରୀ ବନ୍ଧୁକୁ କେହି ଏପରି ବିପଦରେ ତ୍ୟାଗ କରେନାହିଁ ।"

କର୍ମଚାରୀମାନେ ଭଦ୍ରଲୋକଙ୍କୁ ଧରି ନେଇଗଲେ । ରାଓଲ୍ ତାଙ୍କୁ ଆଉ କିଛି ପଚାରିବାର ସୁଯୋଗ ପାଇପାରିଲେ ନାହିଁ, କିନ୍ତୁ ସେ ତାଙ୍କୁ ସେବାଷ୍ଟିଆନ୍ ବୋଲି ଭ୍ରମ କରିଥିବାର ଦେଖି ରାଓଲ୍ ବୁଝିପାରିଲେ ଯେ ଏହି ଭଦ୍ରବ୍ୟକ୍ତି ସେବାଷ୍ଟିଆନ୍‌ଙ୍କର ଜୀବନ ରକ୍ଷା କରିଛନ୍ତି । ତେବେ ତାଙ୍କର ଭାଇ ସେବାଷ୍ଟିଆନ୍ ଜାହାଜଡ଼ୁବିରୁ ରକ୍ଷା ପାଇଯାଇଛନ୍ତି ।

ବାସ୍ତବରେ ସେବାଷ୍ଟିଆନ୍‌ଙ୍କ ଜୀବନ ରକ୍ଷା ହୋଇପାରିଥିଲା । ଏହି ଭଦ୍ରଲୋକଙ୍କର ନାମ ଆଣ୍ଟୋନିଓ । ସେ ଗୋଟିଏ ଜାହାଜର କପ୍ତାନ୍ । ସେ ଦିନେ ସମୁଦ୍ରରେ ଜାହାଜ ଚଳାଇ ଯାଉଥିବାବେଳେ ଲକ୍ଷ୍ୟକଲେ ଯେ ଗୋଟିଏ ଜାହାଜର ମାସ୍ତୁଲ୍ ଭାସିଯାଉଅଛି ଓ ସେଥିରେ ଜଣେ ଯୁବକ ବନ୍ଧାହୋଇଅଛି । ସେ ବହୁ କଷ୍ଟରେ ଯୁବକଟିକୁ ଉଦ୍ଧାର କରି ଆପଣାର ଜାହାଜକୁ ନେଲେ । ସେତେବେଳକୁ ତାଙ୍କର ଚେତା ନଥିଲା । ଆଣ୍ଟୋନିଓଙ୍କ ଚେଷ୍ଟାରେ ସେ ଚେତନା ଫେରିପାଇଲେ । ଯୁବକଙ୍କଠାରୁ ଆଣ୍ଟୋନିଓ ଜାଣିପାରିଲେ

ଯେ ତାଙ୍କର ନାମ ସେବାଷ୍ଟିଆନ୍ । ସେ ଯେଉଁ ଜାହାଜରେ ଯାଉଥିଲେ ତାହା ଝଡ଼ରେ ଭାଙ୍ଗି ଯିବାରୁ ସେ ଆତ୍ମରକ୍ଷାପାଇଁ ନିଜକୁ ଗୋଟିଏ ମାସ୍ତୁଲ ସହିତ ବାନ୍ଧିଦେଇଥିଲେ । ଏହି ଯୁବକଙ୍କ ସହିତ ଆଣ୍ଟୋନିଓଙ୍କର ବନ୍ଧୁତା ହେଲା ଓ ସେ ତାଙ୍କୁ ପ୍ରାଣପଣ ସାହାଯ୍ୟ କରିବାକୁ ପ୍ରତିଶ୍ରୁତ ହେଲେ । ସେବାଷ୍ଟିଆନ୍ ଇଲିରିଆରେ ଓହ୍ଲାଇ ଡ୍ୟୁକ୍ ଅରସିନୋଙ୍କୁ ସାକ୍ଷାତ କରିବାକୁ ଇଚ୍ଛା ପ୍ରକାଶ କଲେ । ତେଣୁ ଆଣ୍ଟୋନିଓ ଅନିଚ୍ଛାସତ୍ତ୍ୱେ ସେବାଷ୍ଟିଆନ୍‌ଙ୍କ ସହିତ ଇଲିରିଆର ଗୋଟିଏ ବନ୍ଦରରେ ଓହ୍ଲାଇଲେ ।

ଆଣ୍ଟୋନିଓ ଜାଣିଥିଲେ ଯେ ଇଲିରିଆରେ ତାଙ୍କର ଜୀବନ ନିରାପଦ ନୁହେଁ । ଏଥିପୂର୍ବରୁ ଗୋଟିଏ ସାମୁଦ୍ରିକ ଯୁଦ୍ଧରେ ସେ ଅର୍ସିନୋଙ୍କର ଭ୍ରାତୁଷ୍ପୁତ୍ରଙ୍କୁ ଆହତ କରିଥିଲେ । ତେଣୁ ଇଲିରିଆରେ ଦେଖାଗଲେ ସେ ଡ୍ୟୁକ୍‌ଙ୍କ ଦ୍ୱାରା ଦଣ୍ଡିତ ହେବାର ଆଶଙ୍କା ଥିଲା ।

ଆଣ୍ଟୋନିଓ ସେବାଷ୍ଟିଆନ୍‌ଙ୍କ ସହିତ ଗୋଟିଏ ପାନ୍ଥଶାଳାରେ ଅବସ୍ଥାନ କଲେ । ସେବାଷ୍ଟିଆନ୍ ବନ୍ଦରର ବଡ଼ିଆ ଅଂଶ ବୁଲି ଦେଖିବା ଏବଂ କିଛି ଜିନିଷ କିଣିବାର ଇଚ୍ଛା ପ୍ରକାଶ କରିବାରୁ ଆଣ୍ଟୋନିଓ ତାଙ୍କୁ ନିଜର ଟଙ୍କାଥଳୀଟି ଦେଇ କହିଲେ, "ମୁଁ ବାହାରକୁ ଯିବିନାହିଁ । ତୁମେ କାର୍ଯ୍ୟ ଶେଷ କରି ଶୀଘ୍ର ପାନ୍ଥଶାଳାକୁ ଫେରିଆସିବ ।"

ମାତ୍ର ସେବାଷ୍ଟିଆନ୍ ନିର୍ଦ୍ଦିଷ୍ଟ ସମୟରେ ଫେରି ନ ଆସିବାରୁ ଆଣ୍ଟୋନିଓ ବାଧ୍ୟ ହୋଇ ତାଙ୍କର ସନ୍ଧାନରେ ବାହାରିଲେ । ଦୈବାତ୍ ପଥ ମଧ୍ୟରେ ସେ ଭାଓଲାଙ୍କୁ ଦେଖିଲେ । ଭାଓଲା ପୁରୁଷବେଶ ଧାରଣ କରିଥିବାରୁ ଓ ତାଙ୍କ ଚେହେରା ଅବିକଳ ସେବାଷ୍ଟିଆନ୍‌ଙ୍କ

ଚେହେରା ପରି ହୋଇଥିବାରୁ ସେ ତାଙ୍କୁ ସେବାଷ୍ଟିଆନ୍ ବୋଲି ମନେ କଲେ ଓ ବିପଦମୁଖରୁ ଉଦ୍ଧାର କଲେ ।

ମାତ୍ର ଭାଓଲା ଏସବୁ ଘଟନା କିଛି ଜାଣି ନ ଥିଲେ । ତେଣୁ ଆଣ୍ଟୋନିଓ ତାଙ୍କୁ କୃତଘ୍ନ, ଅବିଶ୍ୱାସୀ ବୋଲି କହିବା ସ୍ୱାଭାବିକ ।

ଭାଓଲା ଆଶଙ୍କା କଲେ ଯେ ସେହି ଯୁବକ ପୁଣି ତାଙ୍କୁ ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ଆହ୍ୱାନ କରିପାରେ । ସେ ତେଣୁ ଶୀଘ୍ର ସେହି ସ୍ଥାନ ତ୍ୟାଗକରି ଚାଲିଗଲେ । ଏହାର ଅଳ୍ପ ସମୟ ପରେ ସେବାଷ୍ଟିଆନ୍ ସେଠାରେ ଉପସ୍ଥିତ ହେଲେ । ଯୁବକଟି ମନେକଲା ଯେ ସିଜାରିଓ ତା ସଙ୍ଗେ ଯୁଦ୍ଧ କରିବାକୁ ଫେରିଆସିଛନ୍ତି । ସେ କହିଲା, "କିଅଣ, ତୁମର ଏତେ ସାହସ ! ଆଚ୍ଛା, ମୁଁ ତୁମକୁ ଉପଯୁକ୍ତ ଶିକ୍ଷା ଦେଉଛି ।" ଏପରି କହି ସେ ଆକ୍ରମଣ କରିବାକୁ ବାହାରିଲା ।

ସେବାଷ୍ଟିଆନ୍ ଜଣେ ବୀର । ସେ କାହିଁକି ଭୟ କରିବେ ? ସେ ନିଜର ତରବାରି ବାହାର କରି ଯୁବକକୁ ପ୍ରତିଆକ୍ରମଣ କଲେ ।

ଦୈବାତ୍ ଓଲିଭିଆ ସେଠାରେ ଉପସ୍ଥିତ ହୋଇ ଦେଖିଲେ ଯେ ସିଜାରିଓ ଜଣେ ଯୁବକ ସହିତ ଅସିଯୁଦ୍ଧ କରିବାକୁ ଅଗ୍ରସର ହେଉଛନ୍ତି । ତେଣୁ ସେ ଉଭୟଙ୍କୁ ଏଥିରୁ ନିବୃତ୍ତ କଲେ । ପ୍ରକୃତ ପକ୍ଷରେ ସେ ସେବାଷ୍ଟିଆନ୍‌ଙ୍କୁ ସିଜାରିଓ ବୋଲି ଭ୍ରମକରିଥିଲେ ଓ ସିଜାରିଓ ପଥ ମଧ୍ୟରେ ଜଣେ ଯୁବକଦ୍ୱାରା ଆକ୍ରାନ୍ତ ହୋଇଥିବାରୁ ଓଲିଭିଆ ଗଭୀର ଦୁଃଖ ପ୍ରକାଶ କରି ତାଙ୍କୁ ନିଜ ଗୃହକୁ ଡାକିନେଲେ । ସେବାଷ୍ଟିଆନ୍‌ଙ୍କୁ ସିଜାରିଓ ବୋଲି ମନେକରି ଓଲିଭିଆ ପୁଣି ତାଙ୍କୁ ନିଜର ପ୍ରେମ ନିବେଦନ କଲେ । ସେବାଷ୍ଟିଆନ୍ ମଧ୍ୟ ଏଥିରେ ଆନନ୍ଦ ଅନୁଭବ କଲେ । କିନ୍ତୁ ଘଟଣାଟା ତାଙ୍କୁ ରହସ୍ୟମୟ ବୋଧହେଲା । ଜଣେ ଭଦ୍ରମହିଳା ତାଙ୍କ ଭଳି ଜଣେ ଅପରିଚିତ ଯୁବକକୁ ଘରକୁ ଡାକିଆଣି ତାଙ୍କୁ ପ୍ରେମ କରନ୍ତି ବୋଲି

କହିବା ନିତାନ୍ତ ଅସମ୍ଭବ । ତାଙ୍କର ଧାରଣା ଜନ୍ମିଲା ଯେ ଏହି ମହିଳାଙ୍କର ନିଶ୍ଚୟ ମସ୍ତିଷ୍କ-ବିକୃତି ଘଟିଅଛି ।

କିନ୍ତୁ ସେବାଷ୍ଟିଆନ୍ ଲକ୍ଷ୍ୟ କଲେ, ଭୃତ୍ୟମାନଙ୍କ ପ୍ରତି ଆଦେଶ ଦେବାରେ ବା ଗୃହ ପରିଚାଳନାରେ ତାଙ୍କର ଲବମାତ୍ର ମସ୍ତିଷ୍କ-ବିକାରର ଲକ୍ଷଣ ପ୍ରକାଶ ପାଉନଥିଲା । କେବଳ ତାଙ୍କର ସେବାଷ୍ଟିଆନଙ୍କ ପ୍ରତି ଆସକ୍ତି ନିତାନ୍ତ ଅସ୍ୱାଭାବିକ ବୋଧହେଉଥିଲା । ସେବାଷ୍ଟିଆନ୍ ଓଲିଭିଆଙ୍କ ପ୍ରେମ ନିବେଦନକୁ ସ୍ୱୀକାର କରିବାରୁ ସେ ଗଭୀର ଆନନ୍ଦ ପ୍ରକାଶ କଲେ । ଓଲିଭିଆ ମନେକଲେ ଯେ ହୁଏତ କିଛି ସମୟ ପରେ ମିଜାଜ୍ ପୁଣି ତାଙ୍କର ମନ ପରିବର୍ତ୍ତନ କରିପାରନ୍ତି । ତେଣୁ ସେ ପ୍ରସ୍ତାବ କଲେ ଯେ ସଙ୍ଗେ ସଙ୍ଗେ ବିବାହ କର୍ମ ସମ୍ପାଦନ କରିଦେଲେ ଉତ୍ତମ ହେବ । ଏଥିରେ ସେବାଷ୍ଟିଆନ୍ ସ୍ୱୀକୃତ ହେଲେ । ନିକଟରେ ପୁରୋହିତ ଥିଲେ । ସେ ଯଥାବିଧି ଉଭୟଙ୍କୁ ବିବାହ ବନ୍ଧନରେ ଆବଦ୍ଧ କରିଦେଲେ ।

ବିବାହ ଶେଷ ହେବା ମାତ୍ରେ ସେବାଷ୍ଟିଆନ୍ ବନ୍ଧୁ ଆଣ୍ଟୋନିଓଙ୍କୁ ଏହି ବିଚିତ୍ର ସୁସମ୍ବାଦ ଜଣାଇବାପାଇଁ ବାହାରିଗଲେ ।

ଏଥିମଧ୍ୟରେ ଅର୍ସିନୋ ଓଲିଭିଆଙ୍କ ପ୍ରେମରେ ଅଧୀର ହୋଇ ଭାଓଲାଙ୍କ ସହିତ ତାଙ୍କ ଗୃହ ନିକଟରେ ଉପସ୍ଥିତ ହେଲେ । ଠିକ୍ ଏହି ସମୟରେ ରାଜକର୍ମଚାରୀମାନେ ଆଣ୍ଟୋନିଓଙ୍କୁ ବନ୍ଦୀକରିଆଣି ସେଠାରେ ପହଞ୍ଚିଲେ । ଆଣ୍ଟୋନିଓ ଡିଉକ୍‌ଙ୍କ ସହିତ ପୁରୁଷବେଶୀ ଭାଓଲାଙ୍କୁ ଦେଖି ଭ୍ରମରେ ତାଙ୍କୁ ସେବାଷ୍ଟିଆନ୍ ମନେକରି ଡିଉକ୍‌ଙ୍କୁ କହିଲେ, "ମହାଭାଗ, ମୋତେ ଦଣ୍ଡଦେବା ପୂର୍ବରୁ ମୋର ଗୋଟିଏ ନିବେଦନ ଶୁଣନ୍ତୁ । ଏହି ଯୁବକଟି ଗତ ତିନିମାସ ହେଲା ମୋ ସଙ୍ଗରେ ରହିଥିଲା । ମୁଁ ତାର ଜୀବନରକ୍ଷା କରିଛି; ଦିନରାତି ତାର ସେବା କରିଛି । ତାକୁ ବିଶ୍ୱାସରେ ମୋର ଟଙ୍କାଥଳୀ ମଧ୍ୟ ଦେଇଥିଲି ।

ତାଙ୍କୁ ଜଣେ ଦୁର୍ବୃତ୍ତ ହାତରୁ ଉଦ୍ଧାର କରିଛି । କିନ୍ତୁ ସେ ଏତେ କୃତଘ୍ନ ଯେ ମୋତେ ଏବେ ଚିହ୍ନି ନଥିବାର ଛଳନା କରୁଛି ।”

ଏହି ସମୟରେ ଓଲିଭିଆ ଗୃହରୁ ବାହାରି ଆସିବାରୁ ଡିଉକ୍ ଆଣ୍ଟୋନିଓଙ୍କ କଥା ଆଉ ନଶୁଣି କହିଲେ, “ଏଇ ମୋର ପ୍ରେୟସୀ, ପ୍ରାଣର ପ୍ରାଣ ଆସୁଅଛନ୍ତି ।” ତା’ପରେ ଆଣ୍ଟୋନିଓଙ୍କୁ ଲକ୍ଷ୍ୟକରି କହିଲେ, “ତୁମେ ନିଶ୍ଚୟ ପାଗଳ । ତୁମର କଥା ଶୁଣିବାକୁ ମୁଁ ଆଦୌ ପ୍ରସ୍ତୁତ ନୁହେଁ । ଏହି ଯୁବକ ଗତ ତିନିମାସ ହେଲା ମୋ ନିକଟରେ ରହିଆସିଛନ୍ତି ।”

ଆଣ୍ଟୋନିଓଙ୍କୁ ସେଠାରୁ ନେଇଯିବାକୁ ଡିଉକ୍ କର୍ମଚାରୀମାନଙ୍କୁ ଆଦେଶ ଦେଲେ ।

ଅର୍ସିନୋ ଯେଉଁ ଓଲିଭିଆଙ୍କୁ ‘ପ୍ରାଣର ପ୍ରାଣ’ ବୋଲି କହୁଥିଲେ, ସେ ଆସି ସିଜାରିଓଙ୍କର ପ୍ରଶଂସା କରିବାକୁ ଲାଗିଲେ । ତହୁଁ ଅର୍ସିନୋ ଭାବିଲେ ଯେ ସେ ଯେଉଁ ସିଜାରିଓଙ୍କୁ ବିଶ୍ୱାସ କରି ଓଲିଭିଆଙ୍କର ମନକୁ ତାଙ୍କ ଆଡ଼କୁ ଆକର୍ଷଣ କରିବାକୁ ପଠାଉଥିଲେ, ସେ ନିତାନ୍ତ ବିଶ୍ୱାସଘାତକତା କରି ଓଲିଭିଆଙ୍କୁ ହସ୍ତଗତ କରିଅଛନ୍ତି । ସେ କ୍ରୋଧରେ ଅଧୀର ହୋଇ କହିଲେ, “ବିଶ୍ୱାସଘାତକ ଯୁବକ, ଚାଲ୍, ଆଜି ମୁଁ ତୋର ରକ୍ତରେ ଶିକ୍ଷା ଦେବି ।” ଡିଉକ୍‌ଙ୍କର ଆଚରଣରୁ ମନେ ହେଲା ଯେ ସେ କ୍ରୋଧ-ବଶତଃ ତତ୍‌କ୍ଷଣାତ୍ ଭାଓଲାଙ୍କୁ ହତ୍ୟା କରିପାରନ୍ତି । କିନ୍ତୁ ଭାଓଲା ତାଙ୍କର ଏହି କ୍ରୋଧରେ ଭୀତ ନହୋଇ କହିଲେ, “ଆପଣ ମୋର ପ୍ରଭୁ, ମୋର ମୃତ୍ୟୁରେ ଯଦି ଆପଣ ଶାନ୍ତି ପାଇପାରିବେ ତେବେ ମୁଁ ମରିବାକୁ ପ୍ରସ୍ତୁତ ।” ଏହା କହି ସେ ଅର୍ସିନୋଙ୍କ ପଛେ ପଛେ ଯିବାକୁ ଲାଗିଲେ ।

ଓଲିଭିଆ ଏତେ ସହଜରେ ନିଜ ପତିଙ୍କୁ ଛାଡ଼ିଦେବାକୁ ଇଚ୍ଛୁକ ନ ଥିଲେ । ସେ ଅର୍ସିନୋ ଓ ଭାଓଲାଙ୍କର ପଥ ଅବରୋଧ କରି କହିଲେ, "ସିଜାରିଓ ମୋର ପତି । ଆପଣ ମୋଠାରୁ ମୋର ପତିଙ୍କୁ ଛଡ଼ାଇ ନେଇ ପାରିବେ ନାହିଁ । ମାତ୍ର ଦୁଇ ଘଣ୍ଟା ପୂର୍ବେ ଆମ ଦୁହିଁଙ୍କର ପରିଣୟ ସମ୍ପାଦିତ ହୋଇଅଛି ।" ପୁରୋହିତ ଆସି ଏହି ଉକ୍ତିକୁ ସମର୍ଥନ କଲେ । ମାତ୍ର ଭାଓଲା ପ୍ରତିବାଦ କରି କହିଲେ, "ନା, ମୋର ଏହି ମହିଳାଙ୍କ ସହିତ କେବେହେଲେ ବିବାହ ହୋଇନାହିଁ ।" ଓଲିଭିଆ ଓ ପୁରୋହିତଙ୍କର କଥା ଶୁଣି ଅର୍ସିନୋ ମନେକଲେ ଯେ ଯେଉଁ ସିଜାରିଓଙ୍କୁ ସେ ଏତେ ବିଶ୍ୱାସ କରୁଥିଲେ, ସେ ତାଙ୍କର ସର୍ବନାଶ କରିଅଛି; କିନ୍ତୁ ଗତସ୍ୟ ଶୋଚନା ନାସ୍ତି । ବିବାହକର୍ମ ଶେଷ ହୋଇଯାଇଛି । ତାହା ଆଉ ଫେରିଆସିବ ନାହିଁ । ଡିଉକ୍ ରାଜ୍ୟକୁ ଆଦର ଫେରିଯିବାକୁ ବାହାରିଲେ । ସେ ଯିବାବେଳେ କହିଲେ, "ଓଲିଭିଆ ମୋ ପ୍ରେମର ପ୍ରତିଦାନ ନଦେଇ ମୋର ହୃଦୟକୁ କ୍ଷତବିକ୍ଷତ କରିଥିଲା । ସେଥିରେ ପୁଣି ମୋର ଭୃତ୍ୟ ସିଜାରିଓ ମୋ ପ୍ରତି ବିଶ୍ୱାସଘାତକତା କଲା । ମୁଁ ଏଣିକି ଓଲିଭିଆକୁ ଯେପରି ଆଉ ଦେଖିବାକୁ ନପାଏ ।"

ଏହି ସମୟରେ ଏକ ବିଚିତ୍ର ଘଟଣା ଘଟିଲା । ଆଉ ଜଣେ ସିଜାରିଓ ଆସି ଓଲିଭିଆଙ୍କୁ ନିଜର ପତ୍ନୀ ବୋଲି ସମ୍ବୋଧନ କଲା । ଏ ସିଜାରିଓ ପ୍ରକୃତରେ ସେବାଷ୍ଟିଆନ୍‌ଙ୍କ ଛଡ଼ା ଆଉ କେହି ନଥିଲେ । ଏହି ସେବାଷ୍ଟିଆନ୍ ଓଲିଭିଆଙ୍କର ପ୍ରକୃତ ସ୍ୱାମୀ । ଦୁଇଜଣଙ୍କର ଆକାର, ବର୍ଣ୍ଣ, ଗଠନ, କଣ୍ଠସ୍ୱର, ବେଶଭୂଷା ଏକପ୍ରକାର ଦେଖି ସମସ୍ତେ ବିସ୍ମିତ ହୋଇଗଲେ । ଭାଓଲା ମନେ କରିଥିଲେ ଯେ ସେବାଷ୍ଟିଆନ୍‌ଙ୍କର ମୃତ୍ୟୁ ହୋଇଅଛି ଓ ସେବାଷ୍ଟିଆନ ମନେକରି-ଥିଲେ ଯେ ଭାଓଲାର ମୃତ୍ୟୁ ହୋଇଅଛି । ଭାଓଲା ଯେ ଜୀବିତ ଓ ସେ

ପୁରୁଷବେଶ ଧାରଣ କରିଅଛନ୍ତି, ଏହା ସେବାଷ୍ଟିଆନ କଳ୍ପନା କରି ପାରିଲେ ନାହିଁ । ପରିଶେଷରେ ଭାଇ ଭଉଣୀ ପରସ୍ପରକୁ ଚିହ୍ନି ପାରିଲେ ଓ ଭାଇଓଲା ପୁରୁଷବେଶ ଧରି ସିଜାରିଓ ନାମରେ ପରିଚୟ ଦେଇଥିଲେ ବୋଲି ସ୍ୱୀକାର କଲେ ।

ଏବେ ସମସ୍ତ ରହସ୍ୟ ପ୍ରକାଶ ପାଇଗଲା । ଭାଇଭଉଣୀଙ୍କର ଆକାର, ଗଠନ ଓ ବର୍ଣ୍ଣଗତ ସାଦୃଶ୍ୟ ସମସ୍ତଙ୍କୁ ଏପରି ଭ୍ରମରେ ପକାଇଥିଲା ବୋଲି ଜଣାପଡିଲା । ଡୁକ୍‌ହେଁ ପାକ ଓଲିଭିଆଙ୍କୁ ପରିହାସ କରି କହିଲେ, "ଆପଣ ନିଜେ ସ୍ତ୍ରୀ ହୋଇ ଜଣେ ସ୍ତ୍ରୀକୁ ବିବାହ କରିବାକୁ ଏପରି ପାଗଳ ହେଲେ କିପରି ?" ଓଲିଭିଆ ପ୍ରକୃତରେ ଭାଇଓଲାଙ୍କୁ ବିବାହ ନ ହୋଇ ତାଙ୍କ ଭାଇ ସେବାଷ୍ଟିଆନ୍‌ଙ୍କୁ ବିବାହ କରିଥିବାର ଜାଣି ଆନନ୍ଦିତ ହେଲେ ।

ଓଲିଭିଆଙ୍କର ବିବାହ ହୋଇଯାଇଥିବାରୁ ଅର୍ସିନୋଙ୍କର ତାଙ୍କୁ ପାଇବାର ସମସ୍ତ ଆଶା ଲୋପ ପାଇଗଲା । ତା ସଙ୍ଗେ ସଙ୍ଗେ ଓଲିଭିଆଙ୍କ ପ୍ରତି ତାଙ୍କର ପ୍ରେମ ମଧ୍ୟ ଉଭେଇଗଲା । ଏବେ ତାଙ୍କର ବିଶ୍ୱସ୍ତ ପାର୍ଶ୍ୱଚର ଗୋଟିଏ ସୁନ୍ଦରୀ ଯୁବତୀ ବୋଲି ଜାଣିପାରିବାରୁ ତାଙ୍କର ମନଧ୍ୟାନ ତାଙ୍କଠାରେ ନିବଦ୍ଧ ହେଲା । ସେ ଆଗରୁ ସିଜାରିଓଙ୍କ ରୂପ ଓ ଗୁଣରେ ମୁଗ୍‌ଧ ହୋଇଥିଲେ । ଏବେ ସେ ଭାବିଲେ ଯେ ନାରୀର ବେଶଭୂଷା ପରିଧାନ କଲେ ସିଜାରିଓ ଅପୂର୍ବ ସୁନ୍ଦରୀ ଦେଖାଯିବେ । ତାଙ୍କର ମନେ ପଡିଲା; ସିଜାରିଓ ଅନେକବାର କଥାବାର୍ତ୍ତା ସମୟରେ ତାଙ୍କ ପ୍ରତି ନିଜର ପ୍ରେମଭାବ ପ୍ରକାଶ କରିଛନ୍ତି । ତେଣୁ ସେ ସିଜାରିଓବେଶୀ ଭାଇଓଲାଙ୍କୁ ପତ୍ନୀରୂପେ ଗ୍ରହଣ କରିବାକୁ ଅଭିଳାଷ ପ୍ରକାଶ କଲେ । ସେ କହିଲେ, "ସିଜାରିଓ, ତୁମେ ଏତେଦିନ ହେଲା ମୋର ସଙ୍ଗୀ ହୋଇଥିଲ । କେତେ ଥର କହିଛ ଯେ ତୁମେ କୌଣସି ରମଣୀକୁ

ପ୍ରେମ କରିବ ନାହିଁ । ଆଉ ଥରେ କହିଥିଲ, ମୋର ଚେହେରାର, ମୋର ବର୍ଣ୍ଣର ଓ ମୋର ବୟସର ଜଣକୁ ତୁମେ ପ୍ରେମ କର । ଏବେ ତୁମକୁ ମୋର ଜୀବନସଙ୍ଗିନୀ କରି ରଖିବି । ତୁମେ ହେବ ଇଲିଶିଆର ଡଜନ୍‌ଙ୍କ ଧର୍ମପତ୍ନୀ ।"

ଓଲିଭିଆ ଦେଖିଲେ, ସେ ଯେଉଁ ଅର୍ସିନୋଙ୍କୁ ବାରମ୍ବାର ପ୍ରତ୍ୟାଖ୍ୟାନ କରିଥିଲେ, ତାଙ୍କର ହୃଦୟ ସିଂହାସନରେ ସ୍ଥାୟୀ ଆସନ ମାଡ଼ି ରହିଅଛନ୍ତି । ସର୍ଭିଲା ମଧ୍ୟ ତାଙ୍କୁ ଭଲ ପାଇଥିବାର ଯଥେଷ୍ଟ ସୂଚନା ମିଳିଅଛି । ତେଣୁ ସେ ଉଭୟଙ୍କୁ ନିଜର ଗୃହକୁ ନେଇଗଲେ ଓ ପୁରୋହିତଙ୍କୁ ଡକାଇ ଯଥାବିଧି ଉଭୟଙ୍କର ବିବାହ ଅନୁଷ୍ଠାନ କରାଇଲେ ।

ଏହିପରି ସେଦିନ ସକାଳେ ଓଲିଭିଆଙ୍କ ସହିତ ସେବାଷ୍ଟିଆନ୍‌ଙ୍କର ଏବଂ ଅପରବେଳା ସର୍ଭିଲାଙ୍କ ସହିତ ଅର୍ସିନୋଙ୍କର ବିବାହ ହେଲା ।

ସାଇଭଜଣୀ ସୁଖରେ ବୈବାହିକ ଜୀବନ ଯାପନ କଲେ ।

# ବହ୍ୱାରମ୍ଭେ ଲଘୁକ୍ରିୟା

ମେସିନାର ଶାସନକର୍ତ୍ତା ଲିଓନାଟୋଙ୍କ ପ୍ରାସାଦରେ ଦୁଇଜଣ ଯୁବତୀ ଥିଲେ । ସେ ଦୁହିଙ୍କର ନାମ ହେଉଛି ହିରୋ ଓ ବିଏଟ୍ରିସ । ହିରୋ ଥିଲେ ଶାସନକର୍ତ୍ତାଙ୍କର କନ୍ୟା ଓ ବିଏଟ୍ରିସ ତାଙ୍କର ଭ୍ରାତୃଷ୍ପୁତ୍ରୀ ।

ଏ ଦୁହିଙ୍କ ସ୍ୱଭାବରେ ଟିକିଏ ପାର୍ଥକ୍ୟ ଥିଲା । ବିଏଟ୍ରିସ କୌତୁକପ୍ରିୟ ଥିଲେ ଓ ନାନାପ୍ରକାରେ ହିରୋଙ୍କୁ ଆମୋଦ ଦେବାକୁ ଚେଷ୍ଟା କରୁଥିଲେ । ଯେକୌଣସି ଘଟଣାରୁ ବିଏଟ୍ରିସ ଆମୋଦର ଉପାଦାନ ପାଇପାରୁଥିଲେ । କିନ୍ତୁ ହିରୋଙ୍କର ପ୍ରକୃତି ଗମ୍ଭୀର ଥିଲା ।

ଥରେ ସେନାବିଭାଗର କେତେକ ଯୁବକ କର୍ମଚାରୀ ଯୁଦ୍ଧ-ଭୂମିରୁ ମେସିନାବାଟେ ସ୍ୱଦେଶକୁ ଫେରୁଥିଲେ । ସେମାନେ ଯୁଦ୍ଧ-ଭୂମିରେ ଯଥେଷ୍ଟ ବୀରତ୍ୱ ପ୍ରଦର୍ଶନ କରି ପ୍ରଶଂସିତ ହୋଇଥିଲେ । ତେଣୁ ସେମାନେ ପଥମଧ୍ୟରେ ଲିଓନାଟୋଙ୍କ ସହିତ ସାକ୍ଷାତ୍ କରିବାକୁ ମେସିନାକୁ ଆସିଥିଲେ । ଏହି ଉଚ୍ଚ କର୍ମଚାରୀଙ୍କ ମଧ୍ୟରେ ଆରାଗନ୍‌ର ଯୁବରାଜ ଡନ୍ ପେଡ୍ରୋ ଏବଂ ଫ୍ଲରେନ୍‌ସର ଜଣେ ବିଶିଷ୍ଟ ସାମନ୍ତ କ୍ଲଡ଼ିଓ ଥିଲେ । ଏ ଦୁହିଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତା ଥିଲା । ପାଦୁଆର ବେନେଡିକ୍ ନାମକ ଜଣେ ଜମିଦାର ମଧ୍ୟ ଏମାନଙ୍କ ସାଙ୍ଗରେ ଆସିଥିଲେ । ଏହି ବେନେଡିକ୍ ବଡ଼ ପରିହାସରସିକ ଥିଲେ ଏବଂ ବାକ୍‌ଚାତୁର୍ଯ୍ୟରେ ତାଙ୍କୁ କେହି ବଳିପାରୁ ନଥିଲେ ।

ଏମାନେ ଏଥିପୂର୍ବରୁ ମେସିନା ଯାଇଥିଲେ । ଶାସନକର୍ତ୍ତାଙ୍କ ସହିତ ଏମାନଙ୍କର ଆଗରୁ ପରିଚୟ ଥିଲା । ସେ ଉଦାର-ପ୍ରକୃତିକ

ଓ ଅଭିଥିପରାସ୍ପଣ ଥିଲେ । ତେଣୁ ସେ ଏମାନଙ୍କୁ ନେଇ ହ୍ବଚେ ଓ ବଏଟ୍ରିସଙ୍କ ସଙ୍ଗେ ପରିଚୟ କରାଇଦେଲେ ।

ଗୃହ ମଧ୍ୟରେ ପ୍ରବେଶ କଲା ମାତ୍ରେ ବେନେଡ଼ିକ୍ ଲିଓନାଟୋ ଓ ପେଡ୍ରୋଙ୍କ ସହିତ ଗଳ୍ପ କରିବାରେ ମାତିଗଲେ । ବଏଟ୍ରିସ ଏପ୍ରକାର ସୁଯୋଗ ଛାଡ଼ିବେ କାହିଁକି ? ସେ ଏଥିରେ ଯୋଗ ଦେଇ ମଝିରେ ମଝିରେ କହୁଥିଲେ, "ବେନେଡ଼ିକ୍ ମହାଶୟ, ଆପଣ ତ ଏତେ କଥା କହୁଛନ୍ତି; ମାତ୍ର ଆପଣଙ୍କ କଥାକୁ କେହି ଶୁଣୁ ନାହାନ୍ତି ।" ବଏଟ୍ରିସଙ୍କ ମନ ଯେପରି ଚଞ୍ଚଳ, ବେନେଡ଼ିକ୍ଙ୍କର ମନ ମଧ୍ୟ ସେହିପରି ଚଞ୍ଚଳ । ମାତ୍ର ବଏଟ୍ରିସଙ୍କର ଏପରି ମନ୍ତବ୍ୟ ତାଙ୍କୁ ଭଲ ଲାଗୁନଥିଲା । ସେ ମନେକଲେ ଯେ ଜଣେ ଉଚ୍ଚ ପରିବାରର ଭଦ୍ରମହିଳାଙ୍କ ପକ୍ଷରେ ଏପରି ବାବଦୂକତା ପ୍ରକାଶ କରିବା ଅସୁନ୍ଦର । ତାଙ୍କର ମନେ ପଡ଼ିଲା ଯେ ସେ ପୂର୍ବେ ଆଉ ଥରେ ଆସିଥିବା ସମୟରେ ବଏଟ୍ରିସ ତାଙ୍କୁ ହିଁ ଉପହାସର ପାତ୍ର କରିଥିଲେ । ଜଗତରେ କେହି ନିଜକୁ ଉପହାସର ପାତ୍ର ହେବାକୁ ଚାହାନ୍ତି ନାହିଁ; କିନ୍ତୁ ଅନ୍ୟକୁ ଉପହାସ କରି ଆନନ୍ଦ ଅନୁଭବ କରିବାକୁ ଚାହାନ୍ତି । ବେନେଡ଼ିକ୍ ଓ ବଏଟ୍ରିସ୍ ଏ ସାଧାରଣ ନିୟମର ବ୍ୟତିକ୍ରମ ହୁଅନ୍ତେ କିପରି ? ଏଥିପୂର୍ବରୁ ଏ ଦୁହିଙ୍କ ମଧ୍ୟରେ ଏକପ୍ରକାର ଖଣ୍ଡିମତ ବାକ୍ୟୁଦ୍ଧ ହୋଇ ଯାଉଥିଲା ଏବଂ ଦୁହେଁ ପରସ୍ପରପ୍ରତି ଅସନ୍ତୋଷ ପ୍ରକାଶ କରୁଥିଲେ । ତେଣୁ ଯେତେବେଳେ ବଏଟ୍ରିସ୍ କହିଲେ ଯେ କେହି ବେନେଡ଼ିକ୍ଙ୍କ କଥା ଶୁଣୁନାହାନ୍ତି, ସେତେବେଳେ ସେ ବଏଟ୍ରିସଙ୍କୁ ତାଚ୍ଛଲ୍ୟ କଲାପରି କହିଲେ, "ଓହୋ ! ଆପଣ କଅଣ ଜୀବନରେ ଅଛନ୍ତି ?" ଏହା ପରେ ଦୁହିଙ୍କ ମଧ୍ୟରେ ବାଗ୍‌ବିତଣ୍ଡା ଚାଲିଲା । ବଏଟ୍ରିସ ଜାଣିଥିଲେ ଯେ ବେନେଡିକ୍ ଯୁଦ୍ଧରେ ଯଥେଷ୍ଟ କୃତିତ୍ୱ ପ୍ରଦର୍ଶନ କରି ଆସିଅଛନ୍ତି ଓ ସେଥିପାଇଁ ସେ ମନେ-

ମନେ ତାଙ୍କୁ ପ୍ରଶଂସା କରୁଥିଲେ । ମାତ୍ର ଯୁକ୍ତିରେ ତାଙ୍କୁ ପରାସ୍ତ କରିବା ଉଦ୍ଦେଶ୍ୟରେ କହିଲେ, "ଆପଣ ଯୁଦ୍ଧଭୂମିରେ ଯେତେ ଲୋକଙ୍କୁ ବଧ କରିଅଛନ୍ତି, ମୁଁ ସେ ସମସ୍ତଙ୍କୁ ଗିଳି ଦେଇପାରେ ।" ପେଡ୍ରୋ ମନୋଯୋଗ ଦେଇ ବେନେଡିକ୍‌ଙ୍କର କଥା ଶୁଣୁଥିବାର ଲକ୍ଷ୍ୟକରି ସେ ତାଙ୍କୁ କହିଲେ, "ଆପଣ ପେଡ୍ରୋଙ୍କର ବିଦୂଷକ ମାତ୍ର ।"

ବିଏଟ୍ରିସ ତାଙ୍କୁ କାପୁରୁଷ ଓ ବିଦୂଷକ ବୋଲି କହିବାରୁ ବେନେଡିକ୍ ମନେମନେ ବିଶେଷ କ୍ରୁଦ୍ଧ ହୋଇଉଠିଲେ । ବିଏଟ୍ରିସଙ୍କ ପ୍ରତି ତାଙ୍କର ଘୃଣା ଜାତ ହେଲା ।

ଏତେବେଳ ପର୍ଯ୍ୟନ୍ତ ହିରୋ ନୀରବରେ ବସିରହିଥିଲେ ଓ ଫ୍ଲୋରେନସବାସୀ କ୍ଲଡିଓ ଗଭୀର ମନୋଯୋଗ ସହକାରେ ତାଙ୍କର ସୌନ୍ଦର୍ଯ୍ୟ ନିରୀକ୍ଷଣ କରୁଥିଲେ । ବେନେଡିକ୍ ଓ ବିଏଟ୍ରିସଙ୍କର ଯୁକ୍ତିତର୍କ ଶୁଣି ପେଡ୍ରୋ ବେଶ୍ ଆନନ୍ଦ ଉପଭୋଗ କରୁଥିଲେ । ସେ ଖୁବ୍ ନିମ୍ନ ସ୍ୱରରେ ଲିଓନାଟୋଙ୍କୁ କହିଲେ, "ବିଏଟ୍ରିସଙ୍କ ଭଳି ଏକ ମହିଳାଙ୍କ ପାଇଁ ବେନେଡିକ୍ ଉପଯୁକ୍ତ ପତି ହେବେ ।" ଏହା ଶୁଣି ଲିଓନାଟୋ କହିଲେ, "ଯଦି ସେ ଦୁହିଙ୍କର ବିବାହ ହୁଏ, ତେବେ ବିବାହର ସପ୍ତାହକ ଭିତରେ ଦୁହେଁଯାକ ଯୁକ୍ତି କରି କରି ପାଗଳ ହୋଇଯିବେ ।" ଲିଓନାଟୋଙ୍କ ଧାରଣା ହୋଇଥିଲା ଯେ ଏପ୍ରକାର ବିବାହରେ ପାରିବାରିକ ଅଶାନ୍ତି ଲାଗିରହିବ; କିନ୍ତୁ ପେଡ୍ରୋଙ୍କର ଧାରଣା ଅନ୍ୟ ପ୍ରକାର । ସେ ମନେ କରୁଥିଲେ ଦୁହେଁଯାକ ବୁଦ୍ଧିରେ ବିଚକ୍ଷଣ; ତେଣୁ ଏ ଦୁହିଙ୍କର ମିଳନ ହେବା ଉଚିତ ।

ପେଡ୍ରୋ ଦେଖିଲେ କେବଳ ବେନେଡିକ୍ ଓ ବିଏଟ୍ରିସ-ଙ୍କର ବିବାହ ନୁହେଁ, କ୍ଲଡିଓ ଓ ହିରୋଙ୍କର ବିବାହ ପ୍ରଶ୍ନ ମଧ୍ୟ ବିଚାର୍ଯ୍ୟ । କ୍ଲଡିଓ ଯେପରି ହିରୋଙ୍କର ରୂପଗୁଣର ପ୍ରଶଂସା କରୁ-ଥିଲେ, ସେଥିରୁ ତାଙ୍କର ଏପରି ସନ୍ଦେହ କରିବାର କାରଣ ଥିଲା ।

ସେ କ୍ଲଡ଼ିଓଙ୍କୁ ପଚାରିଲେ "ଆପଣ କଣ ହିରୋଙ୍କୁ ଭଲ ପାଆନ୍ତି ?" ଏହାର ଉତ୍ତରରେ ସେ କହିଲେ, "ପୂର୍ବେ ମେସିନାକୁ ଆସିଥିଲା-ବେଳେ ମୁଁ ଜଣେ ସୈନିକର ଚକ୍ଷୁରେ ହିରୋଙ୍କୁ ଦେଖିଥିଲି । ମୋର ଚକ୍ଷୁ ତୃପ୍ତ ହୋଇଥିଲା; କିନ୍ତୁ ଭଲପାଇବାକୁ ସେତେବେଳେ ମୋର ଅବସର ନଥିଲା । ବର୍ତ୍ତମାନ ଯୁଦ୍ଧ ନାହିଁ, ଶାନ୍ତି ପ୍ରତିଷ୍ଠିତ ହୋଇଅଛି । ମୋ ମନରୁ ଯୁଦ୍ଧର ଚିନ୍ତା ଚାଲିଯାଇଛି ଓ ତାହାର ସ୍ଥାନ ଅଧିକାର କରିଛି ହିରୋଙ୍କ ସୌନ୍ଦର୍ଯ୍ୟ ।"

କ୍ଲଡ଼ିଓ ଏହିପରି ସ୍ପଷ୍ଟଭାବରେ ହିରୋଙ୍କୁ ଭଲପାଆନ୍ତି ବୋଲି ପ୍ରକାଶ କରିବାରୁ ପେଡ୍ରୋ ଅବିଳମ୍ବେ ଲିଓନାଟୋଙ୍କ ପାଖକୁ ଯାଇ ଉଭୟଙ୍କର ବିବାହ ବିଷୟ ଉତ୍ଥାପନ କଲେ । ଲିଓନାଟୋ ଏହି ପ୍ରସ୍ତାବରେ ସ୍ୱୀକୃତ ହେବାରୁ ପେଡ୍ରୋ ହିରୋଙ୍କୁ କହିଲେ, "କ୍ଲଡ଼ିଓ ଉଚ୍ଚବଂଶରେ ଜାତ ଓ ବିବିଧ ସଦ୍‌ଗୁଣର ଆଧାର । ସେ ତୁମକୁ ଭଲ ପାଆନ୍ତି । ତାଙ୍କୁ ପତିରୂପେ ଗ୍ରହଣ କଲେ ତୁମେ ସୁଖୀ ହୋଇ-ପାରିବ ।" ହିରୋ କ୍ଲଡ଼ିଓଙ୍କୁ ବିବାହ କରିବାପାଇଁ ସମ୍ମତ ହେବାରୁ ପେଡ୍ରୋଙ୍କ ପରାମର୍ଶରେ ଲିଓନାଟୋ ବିବାହ ଉତ୍ସବ ନିମିତ୍ତ ଗୋଟିଏ ଦିନ ସ୍ଥିର କଲେ ।

ଅଳ୍ପଦିନ ପରେ କ୍ଲଡ଼ିଓ ଏବଂ ହିରୋଙ୍କର ବିବାହ ହେବାର କଥା; କିନ୍ତୁ ଏହି କେତୋଟି ଦିନ କ୍ଲଡ଼ିଓଙ୍କୁ ଅସହ୍ୟ ବୋଧହେଲା । ସାଧାରଣତଃ ଯୁବକମାନେ ଯାହା ପାଇବାକୁ ମନସ୍ଥ କରିଥାନ୍ତି, ତାହା ପାଇବାରେ ବିଳମ୍ବ ହେଲେ ଅସହିଷ୍ଣୁ ହୋଇପଡ଼ନ୍ତି । ତେଣୁ କ୍ଲଡ଼ିଓଙ୍କ ଅଧୀରତା ସ୍ୱାଭାବିକ । ପେଡ୍ରୋ ତାଙ୍କର ଏହି ମନୋଭାବ ଲକ୍ଷ୍ୟ କରି ପ୍ରସ୍ତାବ କଲେ ଯେ, ଏଥିମଧ୍ୟରେ ଯେପରି ବେନେଡ଼ିକ୍ ଓ ବିଏଟ୍ରିସଙ୍କ ମଧ୍ୟରେ ପ୍ରଣୟ ଜାତହୁଏ ସେହିପରି ଗୋଟାଏ କୌଶଳ କରିବାକୁ ହେବ । କ୍ଲଡ଼ିଓ ଏହି ପ୍ରସ୍ତାବରେ ଆନନ୍ଦରେ

ସ୍ୱୀକୃତ ହେଲେ । ଲିଓନାଟୋ ମଧ୍ୟ ପ୍ରସ୍ତାବଟି କାର୍ଯ୍ୟରେ ପରିଣତ କରିବା ବିଗରେ ଯଥାଶକ୍ତି ସାହାଯ୍ୟ କରିବାକୁ ପ୍ରସ୍ତୁତ ହେଲେ । ହିରୋଙ୍କର ମଧ୍ୟ ଇଚ୍ଛା ଥିଲା ଯେ ବିଏଟ୍ରିସ ବେନେଡ଼ିକ୍‌ଙ୍କୁ ବିବାହ କରନ୍ତୁ; ତେଣୁ ସେ ମଧ୍ୟ ଏଥିରେ ସାହାଯ୍ୟ କରିବାକୁ ବାହାରିଲେ ।

ବେନେଡିକ୍‌ଙ୍କୁ ବିଏଟ୍ରିସ୍‌ଙ୍କ ପ୍ରତି ଆକୃଷ୍ଟ କରିବା ଲକ୍ଷ୍ୟରେ ପେଡ୍ରୋ କହିଲେ, "ଏପରି ଏକ ଅବସ୍ଥା ସୃଷ୍ଟି କରିବା, ଯେଉଁଥିରୁ ବେନେଡ଼ିକ୍ ମନେକରିବେ—ବିଏଟ୍ରିସ ମୋତେ ଭଲପାଆନ୍ତି । ହିରୋ ଏପରି ବ୍ୟବହାର ଦେଖାଇବେ ଯେ ସେଥିରୁ ବିଏଟ୍ରିସ ମନେକରିବେ ବେନେଡିକ୍ ହିରୋଙ୍କୁ ଭଲପାଆନ୍ତି ।"

ସୁବିଧା ଦେଖି ପେଡ୍ରୋ, ଲିଓନାଟୋ ଏବଂ କ୍ଲଡ଼ିଓ ସେମାନଙ୍କର କୌଶଳ ପ୍ରୟୋଗ କଲେ । ଦିନେ ବେନେଡିକ୍ ଉପବନର ନିକୁଞ୍ଜ ମଧ୍ୟରେ ବସି ନିଶ୍ଚିନ୍ତ ମନରେ ଖଣ୍ଡିଏ ବହି ପଢ଼ୁଥିଲେ । ପେଡ୍ରୋ, ଲିଓନାଟୋ ଏବଂ କ୍ଲଡିଓ ଧୀରଭାବରେ ଯାଇ ସେହି କୁଞ୍ଜ ପଛରେ ଲୁଚିରହି ଏପରିଭାବରେ କଥାବାର୍ତ୍ତା କଲେ, ଯେପରିକି ତାହା ବେନେଡ଼ିକଙ୍କୁ ଶୁଭାଯିବ । କିଛି ସମୟ ପର୍ଯ୍ୟନ୍ତ ଅନ୍ୟ କଥାବାର୍ତ୍ତା ପରେ ପେଡ୍ରୋ କହିଲେ, "ଲିଓନାଟୋ, ସେଦିନ ଆପଣ ମୋତେ କହୁଥିଲେ, ଆପଣଙ୍କ ଝିଆରି ବିଏଟ୍ରିସ ବେନେଡିକ୍‌ଙ୍କ ପ୍ରେମରେ ପଡ଼ିଛି । ମୋର ଧାରଣା ଥିଲା, ସେ କାହାର ପ୍ରେମରେ ପଡ଼ିବାଭଳି ଝିଅ ନୁହନ୍ତି ।"

ଲିଓନାଟୋ କହିଲେ, "ମୁଁ ମଧ୍ୟ ଆପଣଙ୍କ ପରି ଭାବୁଥିଲି ଯେ ସେ କାହାରି ପ୍ରେମରେ ପଡ଼ିବ ନାହିଁ । ଆଶ୍ଚର୍ଯ୍ୟର କଥା, ସେ ବେନେଡ଼ିକ୍‌ଙ୍କୁ ଆଦୌ ଭଲପାଏ ନାହିଁ ବୋଲି ଦେଖାଇହୁଏ; କିନ୍ତୁ ପ୍ରକୃତରେ ତାର ମନପ୍ରାଣ ସବୁ ସେହି ବେନେଡ଼ିକ୍‌ଙ୍କୁ ସମର୍ପି ଦେଇଅଛି ।"

କ୍ଲଡ଼ିଓ ଏ ଦୁହିଙ୍କ କଥାକୁ ସମର୍ଥନ କରି କହିଲେ, "ମୁଁ ହିରୋଙ୍କଠାରୁ ଶୁଣିଛି, ବିଏଟ୍ରିସ ବେନେଡ଼କ୍‌ଙ୍କୁ ଅତି ଭଲପାଆନ୍ତି। ତାଙ୍କୁ ନପାଇଲେ ସେ ପ୍ରାଣ ରଖିପାରିବେ ନାହିଁ।"

ଲିଓନାଟୋ ଓ କ୍ଲଡ଼ିଓ ଦୁହେଁଯାକ କହିଲେ, "ଏ ବଡ଼ ଅସମ୍ଭବ କଥା। ବିଏଟ୍ରିସ ତ ଦୂରର କଥା, ଯେକୌଣସି ସୁନ୍ଦରୀକୁ ମଧ୍ୟ ବେନେଡ଼କ୍ ଘୃଣା କରନ୍ତି।"

ବିଏଟ୍ରିସଙ୍କ ପ୍ରତି ସହାନୁଭୂତି ଦେଖାଇଲା ଭଳି ପେଡ୍ରୋ କହିଲେ, "ମୋ ମତରେ ଏ କଥା ବେନେଡକ୍‌ଙ୍କୁ ଜଣାଇଦେବା ଭଲ।" କ୍ଲଡ଼ିଓ କହିଲେ, "ଏଥିରେ ଫଳ କଅଣ ହେବ ? ସେ ଏ କଥାକୁ ହସରେ ଉଡ଼ାଇ ଦେବେ; ଫଳରେ ବିଏଟ୍ରିସଙ୍କ ଦୁଃଖର ମାତ୍ରା ବଢ଼ିବ।" ହେଁ ପେଡ୍ରୋ କହିଲେ, "ଯଦି ବେନେଡ଼କ୍ ବିଏଟ୍ରିସଙ୍କ ଦୁଃଖବୃଦ୍ଧିର କାରଣ ହୁଅନ୍ତି, ତାଙ୍କୁ ଫାଶି ଦେବାରେ କ୍ଷତି କଅଣ ? ଆପଣମାନେ ଜାଣନ୍ତି, ବିଏଟ୍ରିସ କେବଳ ସୁନ୍ଦରୀ ନୁହନ୍ତି, ତାଙ୍କପରି ବୁଦ୍ଧିମତୀ ନାରୀ ବିରଳ। ତାଙ୍କର ଏକମାତ୍ର ଦୋଷ ହେଉଛି, ସେ ବେନେଡ଼କଙ୍କୁ ଭଲପାଇଛନ୍ତି।"

ଏହିପରି କଥାବାର୍ତ୍ତା ପରେ ସେମାନେ ସେଠାରୁ ଚାଲିଗଲେ। ସେମାନେ ଜାଣିଥିଲେ ଯେ ବେନେଡ଼କ୍ ନିଶ୍ଚୟ ସେମାନଙ୍କର କଥାବାର୍ତ୍ତା ଶୁଣିଥିବେ। ଏହା ତାଙ୍କ ମନରେ କି ପ୍ରତିକ୍ରିୟା ସୃଷ୍ଟି କରିବ, ତାହା ଜାଣିବାକୁ ସେମାନେ ଅପେକ୍ଷା କରି ରହିଲେ।

ବାସ୍ତବରେ ବେନେଡକ୍ ଏମାନଙ୍କ କଥାବାର୍ତ୍ତା ଗଭୀର ମନୋଯୋଗ ସହକାରେ ଶୁଣିଥିଲେ। ସେମାନେ ଚାଲିଯିବା ପରେ ବେନେଡ଼କ୍ ଚିନ୍ତା କରିବାକୁ ଲାଗିଲେ—"ଏହା କିପରି ସମ୍ଭବ ଯେ ବିଏଟ୍ରିସ ମୋ ପ୍ରତି ଅନୁରକ୍ତା ! ଏମାନଙ୍କର କଥାବାର୍ତ୍ତାରୁ

ଜଣାଯାଉଛି ଯେ ହିରେ ଏ ବିଷୟ ଜାଣେ । ହିରେ ନିଶ୍ଚୟ ବିଏଟ୍ରିସର ମନର କଥା ଜାଣିଥିବ । ସମସ୍ତେ ବିଏଟ୍ରିସ ପ୍ରତି ସହାନୁଭୂତି ପ୍ରକାଶ କରୁଛନ୍ତି । ବିବାହ କରିବି ବୋଲି ମୁଁ କେବେ କଳ୍ପନା କରି ନଥିଲି; କିନ୍ତୁ ଏବେ ମୋ ସକାଶେ ଗୋଟିଏ ନିସ୍ପୃହା ରମଣୀର ପ୍ରାଣହାନି ହେବାକୁ ଯାଉଛି । ଏପରି ସ୍ଥଳେ ମୁଁ ତାର ପ୍ରେମର ପ୍ରତିଦାନ ଦେବା ଉଚିତ ନୁହେଁ କି ? ଆହୁରି ମଧ୍ୟ ସେମାନଙ୍କ ମତରେ ବିଏଟ୍ରିସ୍ ସୁନ୍ଦରୀ ଓ ଗୁଣବତୀ । ସେ ସବୁ ବିଷୟରେ ବୁଦ୍ଧିମତୀ ଓ କେବଳ ମୋପ୍ରତି ଅନୁରକ୍ତି ତାର ଏକମାତ୍ର ଦୋଷ । ମୋତେ ଭଲପାଇବା କଦାପି ତାର ଦୋଷ ହୋଇ ନପାରେ ।”

ସେ ଏହିପରି ଚିନ୍ତା କରୁଥିବା ସମୟରେ ବିଏଟ୍ରିସ ତାଙ୍କୁ ଡାକିବାକୁ ଆସି କହିଲେ, “ମୋର ଆଦୌ ଇଚ୍ଛା ନଥିଲା; କିନ୍ତୁ ସମସ୍ତେ ମୋତେ ବାଧ୍ୟ କରି ପଠାଇଲେ । ଚାଲନ୍ତୁ ଭୋଜନ କରିବେ ।” ଏଥିପୂର୍ବରୁ ବେନେଡିକ୍ କେବେହେଲେ ବିଏଟ୍ରିସଙ୍କ ପ୍ରତି ମଧୁର ଭାଷା ବ୍ୟବହାର କରି ନଥିଲେ । କିନ୍ତୁ ବର୍ତ୍ତମାନ ସେ ରୁକ୍ଷଭାଷା ବ୍ୟବହାର କରି ନପାରି କହିଲେ, “ଆପଣ ମୋ ପାଇଁ ଏତେ କଷ୍ଟ ସ୍ୱୀକାର କରିଥିବାରୁ ଧନ୍ୟବାଦ ।”

ବିଏଟ୍ରିସ୍ କେତେକ ରୁକ୍ଷ କଥା କହିଲେ; କିନ୍ତୁ ବେନେଡିକ୍ ଭାବିଲେ ଏହି କଠୋର ଭାଷାର ଅନ୍ତରାଳରେ ତାଙ୍କ ପ୍ରତି କୋମଳତା ଲୁକ୍କାୟିତ ରହିଛି । ଶେଷରେ ସେ ମନକୁ ମନ କହିଲେ, “ମୋର ଏହାଙ୍କ ପ୍ରତି ସଦୟ ବ୍ୟବହାର କରିବା ଉଚିତ । ଏପରି ଜଣେ ରମଣୀଙ୍କୁ ସ୍ନେହ ନ କଲେ ମୁଁ ନିଜକୁ ନିତାନ୍ତ ଅଧମ ବୋଲି ପ୍ରମାଣିତ କରିବି ।”

ଏହାପରେ ବେନେଡ଼ିକ୍ ଫାଶରେ ପଡ଼ିଗଲେ ।

ଏଣେ ଡନ୍ ଜନ୍ ବିଏଟ୍ରିସଙ୍କୁ କରଗତ କରିବା ଚେଷ୍ଟାରେ ଲାଗିଲେ । ବିଏଟ୍ରିସଙ୍କର ଉର୍ସୁଲା ଓ ମାର୍ଗାରେଟ୍ ନାମରେ ଦୁଇ ଜଣ ସହଚରୀ ଥିଲେ । ଡନ୍ ଜନ୍ ମାର୍ଗାରେଟଙ୍କ ପାଖକୁ ଯାଇ କହିଲେ, "ମାର୍ଗାରେଟ୍, ଗୋଟିଏ କାମ କର । ତୁମେ ବୈଠକଖାନାକୁ ଯିବ । ସେଠାରେ ବିଏଟ୍ରିସ, କ୍ଲଡିଓ ଏବଂ ପେଡ୍ରୋଙ୍କ ସହିତ ଗଳ୍ପ କରୁଥିବେ । ବିଏଟ୍ରିସଙ୍କୁ ଚୁପ୍ କରି କହିବ, ମୁଁ ଉର୍ସୁଲା ସଙ୍ଗରେ ବଗିଚାରେ ତାଙ୍କ ବିଷୟରେ କଥାବାର୍ତ୍ତା ହେଉଛୁ । ସେ ଶୀଘ୍ର ଆମ ପାଖକୁ ଆସିବେ ।"

ମାର୍ଗାରେଟ୍ ବିଏଟ୍ରିସଙ୍କ ପାଖକୁ ଚାଲିଗଲେ ।

ଏଣେ ଡନ୍ ଜନ୍ ଉର୍ସୁଲାଙ୍କୁ ସଙ୍ଗରେ ନେଇ ଉପବନକୁ ଗଲେ । ସେ କହିଲେ, "ଦେଖ, ଏଠାକୁ ବେନେଡ଼ିକ ଏହିକ୍ଷଣି ଆସିବେ । ସେ ଆସିଲାବେଳକୁ ଆମେ ଦୁହେଁଯାକ ବଗିଚାରେ ଏଣେତେଣେ ବୁଲି କଥାବାର୍ତ୍ତା ହେଉଥିବା । ମୁଁ ଯେତେବେଳେ ବେନେଡିକ୍ଟଙ୍କ କଥା ପକାଇବି, ତୁମେ ତାଙ୍କର ଖୁବ୍ ପ୍ରଶଂସା କରିବ । ତାଙ୍କପରି ସୁନ୍ଦର ଓ ଗୁଣବନ୍ତ ପୁରୁଷ ନାହାନ୍ତି ବୋଲି କହିବ ଏବଂ ସେ ବିଏଟ୍ରିସଙ୍କୁ ପ୍ରାଣଦେଇ ଭଲପାଆନ୍ତି ବୋଲି ମୋତେ କହିବ ।"

ବେନେଡ଼ିକ୍ ବଗିଚାକୁ ଆସୁଥିବାର ଦେଖି ସେ ଶୁଣିପାରିବା ଭଳି ସ୍ଥାନରେ ରହି ଦୁହେଁଯାକ ଗଳ୍ପ ଆରମ୍ଭ କରିଦେଲେ । ଡନ୍ ଜନ୍ କୌଣସି ପ୍ରଶ୍ନର ଉତ୍ତର ଦେଲାଭଳି କହିଲେ, "ନା, ଉର୍ସୁଲା ! ମୁଁ ଜାଣେ ଯେ ଆମ ବିଏଟ୍ରିସ ବଡ଼ ଲାଜକୁଳୀ । ବେନେଡ଼ିକ୍ ତାଙ୍କୁ ଏତେ ଭଲ ପାଆନ୍ତି ସତ; କିନ୍ତୁ ବିଏଟ୍ରିସ ତାଙ୍କୁ ବଡ଼ ରୁକ୍ଷ ବ୍ୟବହାର କରୁଛି ।" ଉର୍ସୁଲା କହିଲା, "ଆପଣ କଅଣ ନିଶ୍ଚିତ୍ତ କରି

ଜାଣନ୍ତି ଯେ ବେନେଡ଼ିକ୍ ଆମର ବିଏଟ୍ରିସଙ୍କୁ ହୃଦୟର ସହିତ ଭଲ ପାଆନ୍ତି ?"

ହିରୋ ଉତ୍ତର କଲେ, "ମୁଁ ଏ କଥା ପେଡ୍ରୋଙ୍କଠାରୁ ଶୁଣିଛି । ମୋର ପ୍ରିୟତମ କ୍ଲଡିଓ ମଧ୍ୟ ତାହାହିଁ କହୁଥିଲେ । ସେ ଦୁହେଁଯାକ ଏ କଥା ବିଏଟ୍ରିସଙ୍କୁ ଜଣାଇଦେବା ପାଇଁ ଅନୁରୋଧ କରିଥିଲେ । ମୁଁ କହିଲି, ବେନେଡ଼ିକ୍ ତାଙ୍କୁ ଭଲପାଆନ୍ତି ବୋଲି ଶୁଣିଲେ ବିଏଟ୍ରିସ ମୋ ଉପରେ ରାଗିବେ ।"

ଉର୍ସୁଲା—ବିଏଟ୍ରିସ ଏ କଥା ନ ଜାଣିବା ଭଲ । ଜାଣିଲେ ସେ ହସରେ କଥାଟା ଉଡ଼ାଇ ଦେଇ ବେନେଡ଼ିକ୍ଙ୍କ ପ୍ରତି ଆହୁରି ଖରାପ ବ୍ୟବହାର ଦେଖାଇବେ ।

ହିରୋ—ଉର୍ସୁଲା, ସତ କହୁଛି, ମୁଁ କେତେ ଲୋକ ଦେଖିଛି । କିନ୍ତୁ ବେନେଡ଼ିକ୍ଙ୍କ ଭଳି ସୁନ୍ଦର, ବୁଦ୍ଧିମାନ୍ ଯୁବକ ଦେଖିନାହିଁ । ବିଏଟ୍ରିସ ଯେ ତାଙ୍କ ଉପରେ କାହିଁକି ବିରକ୍ତ ହୁଏ, ମୁଁ ବୁଝିପାରୁନାହିଁ ।

ଉର୍ସୁଲା—ଏପରି ଅନ୍ୟର ଦୋଷ ଖୋଜିବୁଲିବା ବିଏଟ୍ରିସଙ୍କ ପକ୍ଷରେ ଉଚିତ ନୁହେଁ ।

ହିରୋ—ସେ କଥା ସତ । ହେଲେ ବିଏଟ୍ରିସଙ୍କୁ ସେ କଥା କିଏ କହିବ ? ମୁଁ କହିଲେ ସେ ମୋ କଥାକୁ ପରିହାସରେ ଉଡ଼ାଇ ଦେବେ ।

ଉର୍ସୁଲା—ତେବେ ମୁଁ କହିବି ଯେ ଆପଣ ନିଜ ଭଉଣୀ ପ୍ରତି ଅନ୍ୟାୟ କରୁଛନ୍ତି । ତାଙ୍କର କଅଣ ଏତିକି ବୁଦ୍ଧି ନାହିଁ ଯେ ସେ ବେନେଡ଼ିକ୍ଙ୍କ ପରି ଜଣେ ଗୁଣବନ୍ତ ଯୁବକଙ୍କୁ ଗ୍ରହଣ କରିବାକୁ ମନା କରିଦେବେ ?

କ୍ଲଡେ—ସାରା ଇଟାଲୀରେ ବେନେଡିକ୍ଙ୍କୁ କିଏ ନ ଜାଣେ ? ସବୁଠାରେ ତାଙ୍କର ପ୍ରଶଂସା ଶୁଣିବାକୁ ମିଳେ; କ୍ଲଡ଼ିଓଙ୍କ ମଧ୍ୟ ସୁନାମ ଅଛି । ଏ ଦୁହିଙ୍କ ମଧ୍ୟରେ କାହାର ସ୍ଥାନ ଉଚ୍ଚ କହିବା କଠିନ ।

ଏହି ସମୟରେ କ୍ଲଡେ ସୂଚନା ଦେଲେ ଯେ କଥାବାର୍ତ୍ତା ଗତି ପରିବର୍ତ୍ତନ କରିବା ଆବଶ୍ୟକ । ତାଙ୍କ ଉଦ୍ଦେଶ୍ୟ ବୁଝିପାରି ଡନ୍ ଜନ୍ କହିଲେ, "ଆଚ୍ଛା, ଆପଣଙ୍କର ବିବାହ କେଉଁ ଦିନ ହେବ ?"

କ୍ଲଡେ—କାଲି ଆମର ବିବାହ । ତୁମେ ମୋ ସାଙ୍ଗରେ ଚାଲ । ମୋ ପାଇଁ କେତେଗୁଡ଼ିଏ ନୂଆ ପୋଷାକ ଆସିଛି । ସେଥିରୁ କେଉଁଟି ପିନ୍ଧିଲେ ମୋତେ ଭଲ ଦେଖାଯିବ, ସେ ବିଷୟରେ ତୁମର ପରାମର୍ଶ ଲୋଡ଼ା ।

ବିଏଟ୍ରିସ୍ ବଗିଚାରେ ଟିକିଏ ଦୂରରେ ରହି ଦୁହିଙ୍କର ସମସ୍ତ କଥାବାର୍ତ୍ତା ଶୁଣୁଥିଲେ । ଦୁହେଁ ଚାଲିଯିବା ପରେ ସେ ଭାବିବାକୁ ଲାଗିଲେ—'ଯାହା ଶୁଣିଲି, ତାହା କଅଣ ସତ ? ତେବେ ମୋର ଏଭଳି ଦୁର୍ବୁଦ୍ଧି କାହିଁ ଆସିଲା । ସମସ୍ତେ ଯାହାଙ୍କୁ ସୁନ୍ଦର, ଗୁଣବନ୍ତ କହୁଛନ୍ତି, ତାଙ୍କ ପ୍ରତି ମୋର ଘୃଣା କାହିଁକି ? ବୋଧହୁଏ ମୋର ଅଭିମାନ ମୋର ସର୍ବନାଶ କରୁଛି । ନା, ନା, ଏଣିକି ଆଉ ଭ୍ରମ କରିବି ନାହିଁ । ମନରୁ କ୍ରୋଧ, ଅଭିମାନକୁ ଦୂରକୁ ଠେଲିଦେବି । ବେନେଡିକ୍ ମୋପ୍ରତି ଏପରି ଅନୁରକ୍ତ; ଅଥଚ ତାଙ୍କ ଅନୁରାଗ ପରିବର୍ତ୍ତେ ତାଙ୍କୁ ମୁଁ ଘୃଣା କରିଆସିଛି । ମୋତେ ଏ ଅପରାଧର ପ୍ରାୟଶ୍ଚିତ୍ତ କରିବାକୁ ହେବ । ସେ ମୋତେ ଯେତିକି ଭଲ ପାଆନ୍ତି, ମୁଁ ତାଙ୍କୁ ତାଠୁ ଅଧିକ ଭଲ ପାଇବି । ମୋର ହୃଦୟକୁ ତାଙ୍କଠାରେ ଅର୍ପଣ କରିବି ।'

ପେଡ୍ରୋଙ୍କ କୌଶଳରେ ବିଏଟ୍ରିସ ଓ ବେନେଡିକ୍ଙ୍କର ଏ ପରିବର୍ତ୍ତନ ବଡ଼ ଆନନ୍ଦଦାୟକ ହେବାର କଥା; କିନ୍ତୁ ଏଥିମଧ୍ୟରେ

ହିରୋଙ୍କ ଜୀବନରେ ଗୋଟାଏ ଘୋର ବିପର୍ଯ୍ୟୟ ଘଟିଗଲା । ଯେଉଁ ଦିନ ତାଙ୍କର ବିବାହ ହେବ ବୋଲି ସ୍ଥିର ହୋଇଥିଲା, ଠିକ୍ ତାର ପୂର୍ବଦିନ ଏପରି ଏକ ଘଟଣା ଘଟିଲା ଯାହା ଫଳରେ କେବଳ ଯେ ହିରୋଙ୍କର ଜୀବନ ଦୁଃଖମୟ ହେଲା ତାହା ନୁହେଁ; ତାଙ୍କ ପିତା ଲିଓନାଟୋଙ୍କର ଜୀବନ ମଧ୍ୟ ଦୁଃଖରେ ପୂର୍ଣ୍ଣ ହୋଇଗଲା ।

ପେଡ୍ରୋଙ୍କର ଜଣେ ସାବତ ଭାଇ ଥିଲେ । ତାଙ୍କର ନାମ ଡନ୍ ଜନ୍ । ସେ ମଧ୍ୟ ମେସିନା ଯୁଦ୍ଧକ୍ଷେତ୍ରରୁ ତାଙ୍କ ସଙ୍ଗରେ ଆସିଥିଲେ । ଜନ୍‌ଙ୍କର ପ୍ରକୃତି ବଡ଼ ଖରାପ । କିପରି ପରର ଅନିଷ୍ଟ କରିବେ ବୋଲି ତାଙ୍କର ସବୁବେଳେ ଚିନ୍ତା । ସେ ନିଜର ସାବତ ଭାଇ ପେଡ୍ରୋଙ୍କୁ ଭଲ ପାଉ ନଥିଲେ କି କ୍ଲଡ଼ିଓଙ୍କୁ ଭଲ ପାଉ ନ ଥିଲେ । କ୍ଲଡିଓଙ୍କୁ ଭଲ ନ ପାଇବାର ଏକମାତ୍ର କାରଣ ହେଉଛି, ସେ ପେଡ୍ରୋଙ୍କର ବନ୍ଧୁ । ଏ ଦୁହିଁଙ୍କର ଅନିଷ୍ଟ କରିବା ଉଦ୍ଦେଶ୍ୟରେ ସେ ହିରୋ ଓ କ୍ଲଡ଼ିଓଙ୍କର ବିବାହ ବନ୍ଦ କରାଇବାପାଇଁ ଏକ ଭୀଷଣ ଷଡ଼ଯନ୍ତ୍ର କଲେ । ଏହି ଦୁରଭିସନ୍ଧି ସାଧନ କରିବାକୁ ସେ ବୋରାସିଓ ବୋଲି ଜଣେ ଲୋକକୁ ନିଯୁକ୍ତ କଲେ । ଏ ଲୋକଟିର ପ୍ରକୃତି ମଧ୍ୟ ନିତାନ୍ତ ମନ୍ଦ । ସେ ହିରୋଙ୍କର ସହଚରୀ ମାର୍ଗାରେଟ ପ୍ରତି ଆକୃଷ୍ଟ ହୋଇ ବେଳେବେଳେ ତାହା ସହିତ ସାକ୍ଷାତ କରୁଥିଲା ଓ ତାର ମନୋଯୋଗ ଆକର୍ଷଣ କରିବାକୁ ଚେଷ୍ଟା କରୁଥିଲା । ଜନ୍ ଏ ବିଷୟ ଜାଣିଥିଲେ । ସେ ବୋରାସିଓଙ୍କୁ ଧନଲୋଭ ଦେଖାଇ କହିଲେ, "ଆଜି ରାତିରେ ତୁମେ ମୋ ପାଇଁ ଗୋଟିଏ କାମ କରିବ । ତୁମର ମାର୍ଗାରେଟ ସଙ୍ଗରେ ଭାବ ଅଛି । ତାକୁ ଆଜି କହିବ ଯେ ସେ ରାତିରେ ହିରୋ ଶୋଇପଡ଼ିବା ପରେ ହିରୋପରି ପୋଷାକ ପିନ୍ଧି ଶୋଇବା ଘର ଝରକା ବାଟେ ତୁମ ସଙ୍ଗରେ କଥାବାର୍ତ୍ତା ହେବ ।" ନିଜର ମନ୍ଦ ଅଭିପ୍ରାୟ ସିଦ୍ଧ କରିବା ପାଇଁ ସେ ଏପରି

କହିଥିଲେ । ସେ ଭାବିଥିଲେ ମାର୍ଗାରେଟ୍ ବୋରାସିଓ ସଙ୍ଗରେ କଥାବାର୍ତ୍ତା ହେଉଥିଲାବେଳେ ସେ କ୍ଲଡିଓଙ୍କୁ ଡାକି ଆଣି ତାହା ଦେଖାଇଦେବେ । କ୍ଲଡିଓ ମନେକରିବେ ଯେ ହିରୋ ଜଣେ ପରପୁରୁଷ ସଙ୍ଗେ ରାତିରେ ଗୋପନରେ କଥାବାର୍ତ୍ତା ହେଉଅଛନ୍ତି । ବୋରାସିଓ ଧନଲୋଭରେ ଏହି ପ୍ରସ୍ତାବରେ ସ୍ୱୀକୃତ ହୋଇଗଲା ।

ଏଥି ଧରେ ଜନ୍ ଯାଇ ପେଡ୍ରୋ ଓ କ୍ଲଡିଓଙ୍କୁ କହିଲେ— ହିରୋ ବଡ଼ ଭ୍ରଷ୍ଟାଚାରିଣୀ । ରାତି ଅଧରେ ଝରକାବାଟେ ପର-ପୁରୁଷଙ୍କ ସାଙ୍ଗେ ପ୍ରେମାଳାପ କରେ ।" ପ୍ରଥମେ ସେ ଦୁହେଁ ଏଥିରେ ବିଶ୍ୱାସ ନ କରିବାରୁ ଜନ୍ କହିଲେ, "ଆଚ୍ଛା, ଆଜି ରାତିରେ ମୁଁ ତୁମ ଦୁହିଁଙ୍କୁ ଦେଖାଇଦେବି, ରାତିରେ ସେ କଅଣ କରେ ।"

ତହୁଁ କ୍ଲଡିଓ କହିଲେ, ତାହାହେଲେ ଆଜି ରାତିରେ ଆମେ ତୁମ ସଙ୍ଗରେ ଯିବୁ । ତୁମ କଥା ସତ୍ୟବୋଲି ଜଣାଗଲେ, ମୁଁ ତାକୁ ବିବାହ କରିବି ନାହିଁ । ଖାଲି ସେତିକି ନୁହେଁ, ବିବାହ ନିମନ୍ତେ ଯେତେ ଲୋକଙ୍କୁ ନିମନ୍ତ୍ରଣ ହୋଇଛି, ସେମାନଙ୍କ ଆଗରେ ତାର ଚରିତ୍ର କଥା ପ୍ରକାଶ କରି ତାକୁ ଅପମାନ ଦେଇ ଛାଡ଼ିବି ।" ପେଡ୍ରୋ କହିଲେ, "ଆଜଯାଏ ମୁଁ ତୁମର ହିରୋ ସହିତ ବିବାହକୁ ସମର୍ଥନ କରି ଆସିଥିଲି । ତାର ଚରିତ୍ର ଯେବେ ଏପରି ଖରାପ ବୋଲି ଜଣାପଡ଼େ ତେବେ ତାକୁ ମଧ୍ୟ ତୁମ ସଙ୍ଗେ ଅପମାନ ନ ଦେଇ ଛାଡ଼ିବି ନାହିଁ ।"

ପୂର୍ବ ପରିକଳ୍ପନା ଅନୁସାରେ ପ୍ରାୟ ଅର୍ଦ୍ଧରାତ୍ର ସମୟରେ ମାର୍ଗାରେଟ୍ ହିରୋର ପୋଷାକ ପିନ୍ଧି ହିରୋର ଶୟନ କକ୍ଷର ଝରକା ପାଖକୁ ଆସିଲା । ବୋରାସିଓ ବାହାରେ ଛିଡ଼ାହୋଇ ରହିଲା । ଦୁହିଙ୍କର କଥାବାର୍ତ୍ତା ଚାଲିଥିବାବେଳେ ଜନ୍, ପେଡ୍ରୋ ଓ କ୍ଲଡିଓଙ୍କୁ ସେଠାକୁ ଡାକିଆଣିଲେ । ସେମାନେ ଜାଣିନଥିଲେ ଯେ ମାର୍ଗାରେଟ୍

ହ୍ୱଗେର ପୋଷାକ ପିନ୍ଧି ଝରକା ପାଖରେ ରହି କଥାବାର୍ତ୍ତା କରୁଛି । ହ୍ୱଗେ ଜଣେ ପରପୁରୁଷ ସଙ୍ଗେ ଗଭୀର ରାତିରେ ପ୍ରେମାଳାପ କରୁଛି ବୋଲି ସେମାନଙ୍କର ଦୃଢ଼ ଧାରଣା ହୋଇଗଲା । ସେମାନଙ୍କର କ୍ରୋଧ ଓ ବିରକ୍ତିର ସୀମା ରହିଲା ନାହିଁ ।

କ୍ଲଡ଼ିଓ ଭାବିଲେ ଯେ ହ୍ୱଗେକୁ ସେ ଭଲ ପାଇ ଭୀଷଣ ଭ୍ରମ କରିଛନ୍ତି । ଯାହାକୁ ସେ ଫୁଲମଳା ମନେ କରିଥିଲେ, ସେ ପ୍ରକୃତରେ ଏକ ନାଗୁଣୀ । କ୍ରୋଧ ଓ ଦୁଃଖ ସଙ୍ଗେ ତାଙ୍କର ଭୀଷଣ ପ୍ରତିହିଂସା ଜାଗିଉଠିଲା । ସେ ପରଦିନ ବିବାହ ସଭାରେ ସମସ୍ତ ଘଟନା ପ୍ରକାଶ କରି ହ୍ୱଗେକୁ ଅପମାନ ଦେବାକୁ ପ୍ରତିଜ୍ଞା କଲେ । ଏହାହିଁ ଭ୍ରଷ୍ଟା ନାରୀର ଉପଯୁକ୍ତ ଦଣ୍ଡ ହେବ । ପେଡ୍ରୋ ମଧ୍ୟ ଏଥିରେ ଏକମତ ହେଲେ ।

ପରଦିନ ବିବାହ ସମୟରେ ଅତିଥିମାନେ ଉପସ୍ଥିତ ହେଲେ । ପୁରୋହିତ ମଧ୍ୟ ମନ୍ତ୍ରପାଠ କରିବାକୁ ଉପସ୍ଥିତ । କ୍ଲଡ଼ିଓ ଏବଂ ହ୍ୱଗେ ବିବାହ ଉଦ୍ଦେଶ୍ୟରେ ଦଣ୍ଡାୟମାନ । ପୁରୋହିତ ମନ୍ତ୍ରପାଠ କରିବାକୁ ଉଦ୍ୟତ ହେବାକ୍ଷଣି କ୍ଲଡ଼ିଓ ତାଙ୍କୁ ସେଥିରୁ ବାରଣ କରି କହିଲେ, "ମୁଁ ଏହି କନ୍ୟାକୁ ବିବାହ କରିବି ନାହିଁ । ସେ ଭ୍ରଷ୍ଟା-ଚାରିଣୀ । କାଲି ରାତିରେ ମୁଁ ସ୍ୱଚକ୍ଷୁରେ ଦେଖିଛି, ସେ ଜଣେ ପର-ପୁରୁଷ ସଙ୍ଗେ ଝରକାବାଟେ ପ୍ରେମାଳାପ କରୁଥିଲା ।" ହ୍ୱଗେଙ୍କ ମସ୍ତକରେ ବଜ୍ରପାତ ହେଲା । ସେ ଧୀର ସ୍ୱରରେ ଏତିକି ମାତ୍ର କହିଲେ, "ମୋ ପ୍ରିୟତମଙ୍କର ମତିଭ୍ରମ ହେଲା କି ? ସେ ଏପରି କଅଣ କହୁଛନ୍ତି ?"

ଲିଓନାଟୋ ମଧ୍ୟ ଚକିତ ହୋଇ ପେଡ୍ରୋଙ୍କୁ କହିଲେ, "ଆପଣ ନୀରବ ରହୁଛନ୍ତି କାହିଁକି ? ପ୍ରକୃତ କଥା କହନ୍ତୁ ।" ପେଡ୍ରୋ ଉତ୍ତର କଲେ, "ମୁଁ କହିବି କଅଣ ? ମୋର ବନ୍ଧୁଙ୍କୁ ଜଣେ ଭ୍ରଷ୍ଟାଚାରିଣୀ

ସଙ୍ଗେ ବିବାହ ଦେବା ପାଇଁ ଚେଷ୍ଟା କରିଥିବାରୁ ମୁଁ ନିଜେ ଲଜ୍ଜିତ ଓ ଦୁଃଖିତ । ମୁଁ ନିଜେ, ମୋର ଭାଇ ଓ କ୍ଲଡ଼ିଓ ଏ ସମସ୍ତ ସ୍ୱଚକ୍ଷୁରେ ଦେଖିଛୁ; ନିଜ କାନରେ ସବୁ ଶୁଣିଛୁ ।"

ବେନେଡିକ୍ ଏ କଥା ଶୁଣି ଆଶ୍ଚର୍ଯ୍ୟ ହୋଇ କହିଲେ, "ଏଥିରେ ବିବାହ ହେବ କିପରି ?"

ହିରୋ 'ହା ଭଗବାନ' ଏତିକି ମାତ୍ର କହି ଅଚେତ ହୋଇ ତଳେ ପଡ଼ିଗଲେ । ତାଙ୍କର ଅଙ୍ଗପ୍ରତ୍ୟଙ୍ଗ ଅବଶ ହୋଇଗଲା । ନାସାରୁ ନିଶ୍ୱାସ ଚାଲୁଥିବାର ଜଣାଗଲା ନାହିଁ ।

ପେଡ୍ରୋ ଓ କ୍ଲଡ଼ିଓ ସେଠାରେ ଆଉ ରହିଲେ ନାହିଁ । ହିରୋଙ୍କର ଚୈତନ୍ୟ ଫେରିଆସିଲା କି ନା, ତାହା ଦେଖିବା ପାଇଁ ଅପେକ୍ଷା କରିବାକୁ ସେମାନେ ଉଚିତ ମନେ କଲେନାହିଁ । ଲିଓନାଟୋଙ୍କ ମନରେ ଯେ କି ଗଭୀର ଦୁଃଖ ହୋଉଛି, ସେଥିପ୍ରତି ମଧ୍ୟ ସେମାନେ ଦୃଷ୍ଟି ଦେଲେ ନାହିଁ । ହିରୋଙ୍କର ମୃତ୍ୟୁ ଘଟିଛି ବୋଲି ସମସ୍ତେ ମନେକଲେ । କେବଳ ବେନେଡିକ୍ ସେ ସ୍ଥାନ ଛାଡ଼ି ଗଲେ ନାହିଁ । ବିଏଟ୍ରିସଙ୍କ ସାହାଯ୍ୟରେ ସେ ହିରୋଙ୍କ ଚୈତନ୍ୟ ଫେରାଇ ଆଣିବାକୁ ଚେଷ୍ଟା କଲେ । କିନ୍ତୁ ଜୀବନର କୌଣସି ଲକ୍ଷଣ ଦେଖି ନପାରି ବିଏଟ୍ରିସ୍ କହିଲେ, "ଗଭୀର ଦୁଃଖରେ ହଠାତ୍ ହିରୋର ମୃତ୍ୟୁ ହେଲା ।" ବିଏଟ୍ରିସଙ୍କ ମନରେ ଘୋର ଦୁଃଖ ଜାତ ହେଲା । ସେ ଜାଣିଥିଲେ, ହିରୋଙ୍କର ଚରିତ୍ର ନିଷ୍କଳଙ୍କ । ତାଙ୍କ ଚରିତ୍ର ବିଷୟରେ ଯାହା ଶୁଣାଯାଉଛି, ସେସବୁ ମିଥ୍ୟା ।

କନ୍ୟାର ଏହି ଅବସ୍ଥାରେ ଲିଓନାଟୋଙ୍କ ମନରେ ଦୁଃଖ ହେଉଥିଲା ସତ୍ୟ; କିନ୍ତୁ ତାଙ୍କର ଧାରଣା ଥିଲା ଯେ ହିରୋ ପ୍ରକୃତରେ ଭ୍ରଷ୍ଟଚରିତ୍ରା ଓ ଏପରି କନ୍ୟାର ମରଣ ବରଂ ଶ୍ରେୟସ୍କର । ତାର ଆଚରଣରେ ତାଙ୍କ କୁଳରେ କଳଙ୍କ ଲାଗିଛି ।

ଯେଉଁ ପୁରୋହିତ ବିବାହ କରାଇବାକୁ ଆସିଥିଲେ, ସେ ଜଣେ ବିଜ୍ଞ ଲୋକ । ଅନେକ ବିଦ୍ୟାରେ ତାଙ୍କର ପାରଦର୍ଶିତା ଥିଲା । ଲୋକଚରିତ୍ର ତାଙ୍କୁ ଉତ୍ତମରୂପେ ଜଣା । କ୍ଲଡ଼ିଓ ହିରୋଙ୍କ ଚରିତ୍ର ଉପରେ ଦୋଷାରୋପ କରି କହୁଥିଲାବେଳେ ସେ ହିରୋଙ୍କ ମୁଖକୁ ଲକ୍ଷ୍ୟ କରୁଥିଲେ । ସେ ତାଙ୍କ ମୁଖମଣ୍ଡଳ ଓ ଭାବଭଙ୍ଗୀରୁ ବୁଝିପାରିଲେ ଯେ ଏସବୁ ଅଭିଯୋଗ ଅମୂଳକ । ତେଣୁ ସେ ଲିଓନାଟୋଙ୍କୁ କହିଲେ, "ମୁଁ ଧର୍ମଚର୍ଚ୍ଚା କରେ, ବୟସରେ ବୃଦ୍ଧ, ପୌରୋହିତ୍ୟ ମୋର ବ୍ୟବସାୟ । ମୋଠାରେ ଯଦି ଟିକିଏ ବିଶ୍ୱାସ ଥାଏ, ମୁଁ କହିରଖୁଛି, ଆପଣଙ୍କ କନ୍ୟାର ଚରିତ୍ର ନିଷ୍କଳଙ୍କ । କୌଣସି ଭ୍ରମରେ ପଡ଼ି କ୍ଲଡ଼ିଓ ଏପରି ମିଥ୍ୟା ଅପବାଦ ଦେଇଛନ୍ତି ।"

କିଛି ସମୟ ପରେ ହିରୋଙ୍କର ସଂଜ୍ଞା ଫେରିଆସିଲା । ତହୁଁ ପୁରୋହିତ କହିଲେ, "ମାଆ, ତୁ କାହାସଙ୍ଗେ କଥାବାର୍ତ୍ତା ହେଉଥିଲୁ ବୋଲି ସେ କହିଲେ ?" ହିରୋ ଉତ୍ତର କଲେ, "ମୁଁ କାହାରି ସଙ୍ଗେ କଥାବାର୍ତ୍ତା ହୋଇନାହିଁ । ତେଣୁ ଏ ପ୍ରଶ୍ନର କି ଉତ୍ତର ଦେବି ? ଯିଏ ମୋର ଅପବାଦ କରୁଛନ୍ତି, ସେ ଜାଣିଥିବେ ।" ତା'ପରେ ସେ ଲିଓନାଟୋଙ୍କୁ କହିଲେ, "ଆପଣ ମୋର ପିତା । ମୁଁ ଯଦି ଗଲା ରାତିରେ କୌଣସି ପୁରୁଷ ସଙ୍ଗେ କଥାବାର୍ତ୍ତା ହେଉଥିବାର ପ୍ରମାଣ ପାଆନ୍ତି, ତେବେ ଆପଣ ଆଉ ମୋତେ ନିଜର କନ୍ୟା ବୋଲି ସ୍ୱୀକାର କରିବେ ନାହିଁ; ମୋତେ କୁକ୍କୁରଠାରୁ ଅଧିକ ଘୃଣା କରିବେ, ଯାହା ଇଚ୍ଛା ଦଣ୍ଡ ଦେଇ ମୋର ପ୍ରାଣ ନେଇପାରନ୍ତି ।"

ପୁରୋହିତ କହିଲେ, "ମୋ ମତରେ ପେଡ୍ରୋ ଓ କ୍ଲଡ଼ିଓ ଦୁହେଁଯାକ କୌଣସି ଗୋଟାଏ ମହାଭ୍ରମରେ ପଡ଼ିଅଛନ୍ତି । ସେ ଲିଓନାଟୋଙ୍କୁ ଅନୁରୋଧ କରି କହିଲେ, "ମୋର ପରାମର୍ଶ ଗ୍ରହଣ କରନ୍ତୁ । ଆପଣ ପ୍ରଚାର କରି ଦିଅନ୍ତୁ ଯେ ହିରୋର ମୃତ୍ୟୁ

ହୋଇଅଛୁ । ସେ ମୃତବତ୍ ପଡ଼ିଥିବାର ସମସ୍ତେ ଦେଖିଯାଇ ଅଛନ୍ତି; ତେଣୁ ଆପଣଙ୍କ କଥାକୁ କେହି ଅବିଶ୍ୱାସ କରିବେ ନାହିଁ । ଯଥାବିଧି ଶୋକବସ୍ତ୍ର ପରିଧାନ କରି କବର ଉପରେ ହିରୋ ନାମରେ ଗୋଟିଏ ସ୍ମୃତିଫଳକ ନିର୍ମାଣ କରନ୍ତୁ । ଏହା ଫଳରେ ଦେଖିବେ, ଯେଉଁମାନେ ହିରୋକୁ ନିନ୍ଦା କରୁଥିଲେ, ସେମାନେ ତାହାପ୍ରତି ଦୟାର୍ଦ୍ର ହେବେ । ଏହାଛଡ଼ା କ୍ଲଡ଼ିଓ ଯେତେବେଳେ ଜାଣିବେ ଯେ ତାଙ୍କର ଅପବାଦ କଥା ଶୁଣି ହିରୋର ମୃତ୍ୟୁ ହୋଇଅଛି, ସେତେବେଳେ ସେ ହିରୋର ଜୀବନକଥା ଚିନ୍ତା କରିବେ ଓ ତାଙ୍କର ହିରୋପ୍ରତି ପ୍ରକୃତ ପ୍ରେମ ଥିଲେ ସେ ଅନୁଶୋଚନା କରିବେ । ସେ ଜାଣିପାରିବେ, ଘଟନା ସତ୍ୟ ହୋଇଥିଲେ ସୁଦ୍ଧା ହିରୋକୁ ଏପରି ଅପମାନିତ କରିବା ତାଙ୍କ ପକ୍ଷରେ ଉଚିତ ହୋଇନାହିଁ ।"

ବେନେଡ଼ିକ୍ ଲିଓନାଟୋଙ୍କୁ କହିଲେ, "ଆପଣ ଜାଣନ୍ତି, ମୁଁ ପେଡ୍ରୋ ଓ କ୍ଲଡ଼ିଓ ଦୁହିଙ୍କୁ ଅତ୍ୟନ୍ତ ଭଲପାଏ । ତଥାପି ମୁଁ ପ୍ରତିଶ୍ରୁତି ଦେଉଛି ଯେ ମୁଁ ଏହି ବିଷୟ କାହାରି ଆଗରେ ପ୍ରକାଶ କରିବି ନାହିଁ । ଆପଣ ପୁରୋହିତଙ୍କ ପରାମର୍ଶ ଅନୁସାରେ କାର୍ଯ୍ୟ କରନ୍ତୁ ।"

ଲିଓନାଟୋଙ୍କ ହୃଦୟ ଦୁଃଖରେ ଦଗ୍ଧୀଭୂତ ହୋଇ ଯାଇଥିଲା । ପୁରୋହିତ ମହାଶୟ ଲିଓନାଟୋ ଏବଂ ହିରୋଙ୍କୁ ନେଇ ସାନ୍ତ୍ୱନା ଦେବାକୁ ଲାଗିଲେ ।

ବେନେଡ଼ିକ୍ ଓ ବିଏଟ୍ରିସ୍‌ଙ୍କ ମିଳନ ପାଇଁ ଯେଉଁ ବନ୍ଧୁମାନେ ଏତେ ଉଦ୍ୟମ କରିଥିଲେ, ସେହି କ୍ଲଡ଼ିଓ ଏବଂ ହିରୋଙ୍କ ମଧ୍ୟରେ ବିରୋଧ ଓ ଶେଷରେ ହିରୋଙ୍କର ମୃତ୍ୟୁରେ ସେ ଦୁହେଁ ଗଭୀର ଶୋକ ପ୍ରକାଶ କଲେ ।

ବେନେଡିକ୍ କହିଲେ, "ପ୍ରିୟେ, ତୁମେ କେତେ ଦିନ ଏହିପରି ହିରୋଙ୍କୁ ଝୁରି କାନ୍ଦୁଥିବ ?" ବିଏଟ୍ରିସ କହିଲେ, "ମୋର ଶୋକ ନିବୃତ୍ତି ହେବ କିପରି ? ଯେତେଦିନ ପର୍ଯ୍ୟନ୍ତ ମୋ ଚକ୍ଷୁରେ ଅଶ୍ରୁ ଥିବ, ସେତେଦିନ ପର୍ଯ୍ୟନ୍ତ ଏହିପରି କାନ୍ଦୁଥିବି । ଯଦି କେହି ହିରୋର ମୃତ୍ୟୁର ପ୍ରତିଶୋଧ ନେଇପାରେ, ତେବେ ମୁଁ ତାହା ନିକଟରେ ଚିରଋଣୀ ହୋଇ ରହିବି । ମୋତେ ବିଶ୍ୱାସ କର, ହିରୋ ମୋର ଅତି ପ୍ରିୟ ଥିଲା ।"

ବେନେଡିକ୍ କହିଲେ, "ତୁମେ ମୋତେ ସ୍ନେହ କର, ମୁଁ ମଧ୍ୟ ତୁମକୁ ସ୍ନେହ କରେ । କୁହ, ତୁମପାଇଁ ମୁଁ କଅଣ କରି-ପାରେ ?" ତହୁଁ ବିଏଟ୍ରିସ କହିଲେ, "ତେବେ କ୍ଲଡିଓଙ୍କୁ ହତ୍ୟା କର ।" କିନ୍ତୁ ବେନେଡିକ ଉତ୍ତର କଲେ, "ତା କି ସମ୍ଭବ ! ସମଗ୍ର ପୃଥିବୀର ବିନିମୟରେ ମୁଁ ତାହା କରିପାରିବି ନାହିଁ । ସେ ମୋର ପରମ ବନ୍ଧୁ ।"

ବିଏଟ୍ରିସ—ସେ ତୁମର ବନ୍ଧୁ ହୋଇପାରେ, ମାତ୍ର ସେ ସଇତାନ, ବଦମାସ୍ । ତାହାର ବିଶ୍ୱାସଘାତକତା ଯୋଗୁଁ ହିରୋର ମୃତ୍ୟୁ ହେଲା । ଯଦି ମୁଁ ନାରୀ ନ ହୋଇ ପୁରୁଷ ହୋଇଥାନ୍ତି, ତେବେ ଏ ଅନ୍ୟାୟର ପ୍ରତିଶୋଧ ନିଅନ୍ତି । ଯେପରି କେହି ଜଣେ ମୋର ବନ୍ଧୁ ଥିଲେ, ସେ ମୋପାଇଁ କ୍ଲଡ଼ିଓର ପ୍ରାଣନାଶ କରନ୍ତା । ମୋର ସେପରି ବନ୍ଧୁ ନାହାନ୍ତି କି ମୁଁ ପୁରୁଷ ହୋଇ ପାରିବି ନାହିଁ । ଦେଖୁଛି, ମୁଁ ହିରୋକୁ ଝୁରି ଝୁରି ମରିବି ।

ବେନେଡିକ୍—ମୋତେ ବିଶ୍ୱାସ କର, ମୁଁ ପ୍ରାଣର ସହିତ ତୁମକୁ ଭଲ ପାଏ । ତୁମର କଅଣ ଆନ୍ତରିକ ବିଶ୍ୱାସ ହେଉଛି, କ୍ଲଡ଼ିଓ ପ୍ରକୃତରେ ହିରୋର ମୃତ୍ୟୁର କାରଣ ? ହିରୋ ଝରକାବାଟେ ଜଣେ ପରପୁରୁଷ ସଙ୍ଗେ କଥାବାର୍ତ୍ତା ହେବା କଣ ମିଥ୍ୟା ?

ବିଏଟ୍ରିସ—ହିରୋ ଯେ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ, ମୋର ସେଥିରେ ଲବ ମାତ୍ର ସନ୍ଦେହ ନାହିଁ ।

ବେନେଡିକ୍—ତେବେ ମୁଁ ପ୍ରତିଜ୍ଞା କରୁଛି, ତୁମର ନାମ ନେଇ ଶପଥ କରୁଛି, ମୁଁ କ୍ଲଡିଓଙ୍କୁ ଦ୍ୱନ୍ଦ୍ୱଯୁଦ୍ଧ କରିବା ପାଇଁ ଆହ୍ୱାନ କରିବି ।

ଏଣେ ବିଏଟ୍ରିସ ବେନେଡିକଙ୍କୁ ଏପରି ଉତ୍ତେଜିତ କରୁଥିବା ବେଳେ ଲିଓନାଟୋ ମଧ୍ୟ ପେଡ୍ରୋ ଓ କ୍ଲଡିଓଙ୍କ ଉପରେ ଦୋଷାରୋପ କରି ଦ୍ୱନ୍ଦ୍ୱଯୁଦ୍ଧ କରିବାକୁ ଆହ୍ୱାନ କରୁଥିଲେ । ମାତ୍ର ସେ ଦୁହେଁ କହିଲେ, "ଆପଣ ଆମଠାରୁ ବର୍ଷୀୟାନ୍ । ଆପଣଙ୍କ ସଙ୍ଗେ ଦ୍ୱନ୍ଦ୍ୱଯୁଦ୍ଧ ଅସୁନ୍ଦର ।" ଏହି ସମୟରେ ବେନେଡିକ ଯାଇ କ୍ଲଡିଓଙ୍କୁ ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ଆହ୍ୱାନ କଲେ । ସେ ଦୁହେଁ ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଅଛନ୍ତି, ଏହି ସମୟରେ ଏକ ବିଚିତ୍ର ଘଟଣା ଘଟିଲା । ସେହି ଘଟଣାଦ୍ୱାରା ହିରୋଙ୍କର ନିର୍ଦ୍ଦୋଷିତା ଏପରି ପ୍ରମାଣିତ ହୋଇଗଲା ଯେ ଦ୍ୱନ୍ଦ୍ୱଯୁଦ୍ଧର ଆଉ ଅବକାଶ ରହିଲା ନାହିଁ ।

ଦ୍ୱନ୍ଦ୍ୱଯୁଦ୍ଧର ଆଲୋଚନା ଚାଲିଥିଲାବେଳେ ଜଣେ ମାଜିଷ୍ଟ୍ରେଟ ବୋରାସିଓଙ୍କୁ ବନ୍ଦୀ ଅବସ୍ଥାରେ ଆଣି ପେଡ୍ରୋଙ୍କ ନିକଟରେ ଉପସ୍ଥିତ କଲେ । ଡନ୍ ଜନର କୁପରାମର୍ଶରେ ସେ ଯାହା କରିଥିଲା, ତାହା ସେ ଜଣେ ବନ୍ଧୁକୁ କହୁଥିବାବେଳେ ଜଣାପଡ଼ିଗଲା ।

ବୋରାସିଓ ପେଡ୍ରୋଙ୍କ ସମକ୍ଷରେ ସ୍ୱୀକାର କଲା ଯେ ମାର୍ଗାରେଟ୍ ହିରୋର ପୋଷାକ ପିନ୍ଧି ଝରକାବାଟେ କଥାବାର୍ତ୍ତା ହେଉଥିଲା । ତେଣୁ ତାକୁ ହିରୋ ବୋଲି ମନେ କରିବା ସ୍ୱାଭାବିକ । କ୍ଲଡିଓ ଏହି କଥା ଶୁଣି ଘୋର ଅନୁତାପ କଲେ ।

ସେ ଭାବିଲେ ଯେ ପ୍ରକୃତରେ ସେ ହିରୋର ମୃତ୍ୟୁର କାରଣ । ହିରୋଙ୍କ ସହିତ ତାଙ୍କର ପ୍ରେମପୂର୍ଣ୍ଣ ସମ୍ବନ୍ଧ ତାଙ୍କ ସ୍ମୃତିରେ ଜାଗରିତ

ହେଲା । ସେ ନଜକୁ ଧିକ୍କାର କରିବାକୁ ଲାଗିଲେ । ସେ ଲିଓ-ନାଟୋଙ୍କ ସମ୍ମୁଖରେ ପ୍ରାର୍ଥନା କଲେ, ମୁଁ ହିରୋର ଚରିତ୍ର ବିଷୟରେ ମିଥ୍ୟା ଅଭିଯୋଗ ଆଣି ତାଙ୍କ ପ୍ରତି ଘୋର ଅନ୍ୟାୟ କରିଛି । ତାଙ୍କର ମୃତ୍ୟୁ ପାଇଁ ମୁଁ ପୂରା ଦାୟୀ । ଆପଣ ତାଙ୍କର ପିତା । ଏହି ଅପରାଧ ପାଇଁ ଆପଣ ଯୋଉ ଯେଉଁ ଦଣ୍ଡ ଦେବେ, ତାହା ଗ୍ରହଣ କରିବାକୁ ମୁଁ ପ୍ରସ୍ତୁତ ।"

ଲିଓନାଟୋ କହିଲେ, "ତୁମେ ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ, ମୋର କନ୍ୟାର ମୃତ୍ୟୁ ଘଟାଇଅଛ । ଯେଉଁ ହିରୋ ସହିତ ତୁମର ବିବାହ ହୋଇଥାନ୍ତା, ସେ ବର୍ତ୍ତମାନ ସ୍ୱର୍ଗରେ । କିନ୍ତୁ ମୋର ଗୋଟିଏ ଝିଆରୀ ଅଛି । ସେ ଠିକ୍ ହିରୋ ପରି ସୁନ୍ଦରୀ ଓ ଏବେ ମୋର ସମ୍ପତ୍ତିର ଉତ୍ତରାଧିକାରିଣୀ । ତୁମେ ତାକୁ ପତ୍ନୀରୂପେ ଗ୍ରହଣ କର ।"

କ୍ଲଡ଼ିଓ — ମୁଁ ପ୍ରତିଜ୍ଞା କରୁଛି, ଆପଣଙ୍କ ଆଦେଶ ପାଳନ କରିବି । ସେ ସୁନ୍ଦରୀ ହୁଅନ୍ତୁ ବା ନିଗ୍ରୋପରି କୃଷ୍ଣକାୟା ହୁଅନ୍ତୁ, ମୁଁ ତାଙ୍କୁ ବିବାହ କରିବି ।

କ୍ଲଡ଼ିଓ ଏହା କହିଲେ ସତ, କିନ୍ତୁ ତାଙ୍କ ହୃଦୟରେ ଘୋର ଅନୁତାପ ଜାତ ହେଲା । ସେଦିନ ରାତିରେ ସେ ହିରୋଙ୍କ ସମାଧି ନିକଟକୁ ଯାଇ ଗତକଥା ସ୍ମରଣ କରି ଅଶ୍ରୁ ବର୍ଷଣ କରିବାକୁ ଲାଗିଲେ ।

ପରଦିନ ସକାଳେ ବିବାହ ଉତ୍ସବ ଉପଲକ୍ଷେ ପେଡ୍ରୋ ଓ କ୍ଲଡ଼ିଓ ଗୀର୍ଜାରେ ଉପସ୍ଥିତ ହେଲେ । ଏଥିପୂର୍ବରୁ ଲିଓନାଟୋ ଓ ତାଙ୍କର ଝିଆରୀ ସେଠାରେ ଉପସ୍ଥିତ ଥିଲେ । ପାଦ୍ରୀ ବିବାହ ମନ୍ତ୍ର

ପାଠ କରିବାକୁ ଆସିଥିଲେ । କିନ୍ତୁ ଲିଓନାର୍ଟୋଙ୍କ ଝିଅଟି ଗୋଟିଏ ମୁଖା ପିନ୍ଧି ବସିଥିଲେ । ତେଣୁ ତାଙ୍କର ପ୍ରକୃତ ଚେହେରା ଜାଣିବାର ଉପାୟ ନଥିଲା । ଲିଓନାର୍ଟୋ ଏହି ଝିଅଟିଙ୍କୁ ଆଣି କ୍ଲଡିଓଙ୍କ ପାଖରେ ଚହଣ୍ଡାଇ କହିଲେ, "ମୋର ଏହି ଝିଅଟିକୁ ତୁମକୁ ବିବାହ କରିବାକୁ ହେବ ।" କ୍ଲଡ଼ିଓ ଏହି ମୁଖାଧାରିଣୀଙ୍କୁ ସମ୍ବୋଧନ କରି କହିଲେ, "ତୁମେ କିଏ ମୁଁ ଜାଣେ ନାହିଁ କିମ୍ବା ତୁମର ରୂପ ଦେଖିନାହିଁ; କିନ୍ତୁ ମୁଁ ପ୍ରତିଶ୍ରୁତି ଦେଇଛି । ଯଦି ତୁମେ ମୋତେ ପତିରୂପେ ଗ୍ରହଣ କରିବାକୁ ପ୍ରସ୍ତୁତ, ତେବେ ପୁରୋହିତ ମନ୍ତ୍ରପାଠ କରିବେ ।" ଏହା ଶୁଣି ସେହି ମୁଖାଧାରିଣୀ କହିଲେ, "ମୁଁ ଯେତେ-ବେଳେ ପୃଥିବୀରେ ବଞ୍ଚିଥିଲି, ସେତେବେଳେ ମୁଁ ତୁମର ସ୍ତ୍ରୀ ଥିଲି । କେବଳ ମନ୍ତ୍ରପାଠ ସମ୍ପୂର୍ଣ୍ଣ ହୋଇନଥିଲା ।" ଏହା କହି ସେ ମୁଖାଟି ବାହାର କରିଦେଲେ । ସମସ୍ତେ ଦେଖିଲେ, ସେ ହେଉଛନ୍ତି ସ୍ୱୟଂ ହିରୋ, ଲିଓନାର୍ଟୋଙ୍କର କନ୍ୟା, କ୍ଲଡ଼ିଓଙ୍କର ନିର୍ବାଚିତା ପତ୍ନୀ ।

କ୍ଲଡ଼ିଓଙ୍କର ବିସ୍ମୟର ସୀମା ରହିଲା ନାହିଁ । ସେ ନିଜ ଚକ୍ଷୁକୁ ବିଶ୍ୱାସ କରିପାରିଲେ ନାହିଁ । ଯେଉଁ ହିରୋ ତାଙ୍କ ଆଗରେ ପ୍ରାଣ ହରାଇଥିଲା, ଯାହାର ସମାଧିମନ୍ଦିରରେ ସେ ଅଶ୍ରୁ ବର୍ଷଣ କରିଥିଲେ, ସେ ପୁଣି ଆସିଲା କହୁଁ ? ପେଡ୍ରୋ ମଧ୍ୟ ବିସ୍ମୟରେ ଅଭିଭୂତ ହୋଇଗଲେ । ତାଙ୍କୁ ଏହି ଘଟଣା ଦୈବୀ ମାୟାପରି ବୋଧହେଲା ।

ପୁରୋହିତ ସମସ୍ତ ଘଟଣା ବର୍ଣ୍ଣନା କରିବାରୁ ସନ୍ଦେହ ଓ ବିସ୍ମୟ ଦୂରୀଭୂତ ହେଲା । ସେ କ୍ଲଡିଓ ଏବଂ ହିରୋଙ୍କର ବିବାହକର୍ମ କରିବାକୁ ଉଦ୍ୟତ ହେଉଛନ୍ତି, ଏହି ସମୟରେ ବେନେଡ଼ିକ୍ କହିଲେ, "ଟିକିଏ ଅପେକ୍ଷା କରନ୍ତୁ । ଏକସମୟରେ ମୋର ବିଏଟ୍ରିସଙ୍କ ସହିତ ବିବାହ ମଧ୍ୟ ହେବ ।"

ଅବଶ୍ୟ ବିଏଟ୍ରିସ ଓ ବେନେଡିକ୍ଙ୍କ ମଧ୍ୟରେ ପ୍ରଥମେ ପ୍ରକୃତ ପ୍ରେମ ନ ଥିଲା । କିନ୍ତୁ ଦୁହେଁ ପରସ୍ପରର ଜୀବନରକ୍ଷା କରିବାପାଇଁ ବିବାହରେ ସ୍ୱୀକୃତ ହୋଇଥିଲେ । ତେଣୁ କ୍ରମେ ଦୁହିଙ୍କ ମଧ୍ୟରେ ପରସ୍ପର ପ୍ରତି ଆକର୍ଷଣ ଜାତ ହୋଇଥିଲା ।

ପୂର୍ବୋକ୍ତ ଦୁଇଟିଯାକ ବିବାହ ଏକସମୟରେ ସମାଧାନ କରିଦେଲେ । ମେସିନାର ରାଜପ୍ରାସାଦରେ ବିବାହ ଉତ୍ସବ ଲାଗିଗଲା ।

ଡନ୍ ଜନ୍ ନିଜର ଅପରାଧପାଇଁ ଉପଯୁକ୍ତ ଦଣ୍ଡ ଭୋଗକଲା ।

---

# ନିଦାଘରାତିର ସ୍ୱପ୍ନ

ପ୍ରାଚୀନ କାଳରେ ଗ୍ରୀସ୍‌ର ଏଥେନ୍‌ସ ନଗରୀରେ ଏକ ବିଚିତ୍ର ନିୟମ ଥିଲା । ଏହି ନିୟମ ଅନୁସାରେ କନ୍ୟାମାନେ ସେମାନଙ୍କ ପିତାଙ୍କଦ୍ୱାରା ନିର୍ବାଚିତ ଯୁବକଙ୍କୁ ପତିରୂପେ ଗ୍ରହଣ କରିବାକୁ ବାଧ୍ୟ ହେଉଥିଲେ । ଆଇନର ବ୍ୟବସ୍ଥା ଅନୁସାରେ କୌଣସି କନ୍ୟା ପିତାଙ୍କଦ୍ୱାରା ମନୋନୀତ ଯୁବକଙ୍କୁ ବିବାହ କରିବାପାଇଁ ଅନିଚ୍ଛା ପ୍ରକାଶ କଲେ, ପିତା ସେହି କନ୍ୟାର ପ୍ରାଣନାଶ କରାଇପାରୁଥିଲେ । କନ୍ୟାମାନେ ସବୁ କ୍ଷେତ୍ରରେ ଯେ ପିତାଙ୍କ ମନୋନୀତ ପାତ୍ରକୁ ବିବାହ କରୁଥିଲେ, ତାହା ନୁହେଁ । ଅନେକ ସ୍ଥଳରେ କନ୍ୟା ପିତାଙ୍କଦ୍ୱାରା ନିର୍ବାଚିତ ବରକୁ ବିବାହ ନ କରି ନିଜ ଇଚ୍ଛାନୁରୂପ ଯୁବକଙ୍କୁ ପତିରୂପେ ବରଣ କରୁଥିଲେ । ମାତ୍ର କେଉଁ ପିତା କନ୍ୟାର ଏହି ଅପରାଧ ଲାଗି ତାହାର ପ୍ରାଣଦଣ୍ଡର ବ୍ୟବସ୍ଥା କରିବ ? ଫଳତଃ ଏହି ଆଇନ୍‌ଟି ପ୍ରକୃତରେ ପ୍ରତିପାଳିତ ହେଉ ନଥିଲା । ତଥାପି କୌଣସି କୌଣସି ପିତା ଅବାଧ୍ୟ କନ୍ୟାକୁ ଏହି ଆଇନର ଧମକ ଦେଇ ନିଜର ବଶ କରୁଥିଲେ ।

ଏକଦା ଇଜିୟୁସ ନାମକ ଜଣେ ବୃଦ୍ଧ ବ୍ୟକ୍ତି ଏଥେନ୍‌ସର ଶାସନକର୍ତ୍ତା ଡିଉକ୍ ଥିସିଅସ୍‌ଙ୍କ ନିକଟରେ ଅଭିଯୋଗ କଲେ ଯେ ତାଙ୍କର କନ୍ୟା ହର୍ମିଆ ତାଙ୍କଦ୍ୱାରା ନିର୍ବାଚିତ ଏଥେନ୍‌ସର କୁଳୀନ ସନ୍ତାନ ଡିମେଟ୍ରିଅସ୍‌ଙ୍କୁ ବିବାହ କରିବାକୁ ଅସ୍ୱୀକୃତ ହୋଇ ଲିସାଣ୍ଡର ନାମକ ଅନ୍ୟ ଜଣକୁ ବିବାହ କରିବାକୁ ଇଚ୍ଛା କରୁଅଛି ।

ତେଣୁ ବିବାହ ବିଷୟରେ ପିତାଙ୍କ ଆଦେଶ ଲଙ୍ଘନ କରିବା ଅପରାଧରେ ହର୍ମିଆ ପ୍ରତି ମୃତ୍ୟୁଦଣ୍ଡବିଧାନ କରାଯାଉ ।

ବିଚାରାଳୟକୁ ଆସି ହର୍ମିଆ ଆତ୍ମସମର୍ଥନ କରି କହିଲା, "ଏଥିପୂର୍ବରୁ ଡିମେଟ୍ରିଅସ୍ ତାର ବାନ୍ଧବୀ ହେଲେନାକୁ ବିବାହ କରିବାକୁ ପ୍ରତିଶ୍ରୁତି ଦେଇଅଛନ୍ତି ଓ ହେଲେନା ମଧ୍ୟ ଅନ୍ତରର ସହିତ ଡିମେଟ୍ରିଅସ୍‌ଙ୍କୁ ଭଲ ପାଏ । ତେଣୁ ସେ ଡିମେଟ୍ରିଅସ୍‌ଙ୍କୁ ବିବାହ କରିବାକୁ ଅକ୍ଷମ ।"

ହର୍ମିଆର ଏହି ଯୁକ୍ତିରେ ଡିଉକ୍‌ଙ୍କ ମନରେ ସହାନୁଭୂତି ଜାତ ହେଲା; କିନ୍ତୁ ବିଚାରକ ଭାବରେ ସେ ଆଇନ ଅନୁସାରେ କାର୍ଯ୍ୟ କରିବାକୁ ବାଧ୍ୟ । ଏଣେ ଇଜିୟସ୍ ନିଜ ଅଭିଯୋଗରେ ଦୃଢ଼ ହୋଇ ରହିଲେ । ଆଇନ ଅନୁସାରେ ହର୍ମିଆ ଦଣ୍ଡିତ ହେବାର କଥା; ତେଣୁ ଡିଉକ୍ ଅଗତ୍ୟା ଆଦେଶ ଦେଲେ ଯେ ହର୍ମିଆ ଚାରିଦିନ ମଧ୍ୟରେ ଧୀରସ୍ଥିର ଭାବରେ ଚିନ୍ତା କରି ନିଜର କର୍ତ୍ତବ୍ୟ ସ୍ଥିର କରିନେଉ । ଚାରିଦିନ ପରେ ଯଦି ସେ ପିତାଙ୍କ ଇଚ୍ଛା ବିରୁଦ୍ଧରେ ଅନ୍ୟ ଯୁବକକୁ ଚାହେଁ, ତେବେ ତାର ପ୍ରାଣଦଣ୍ଡ ହେବ ।

ହର୍ମିଆ ବିଚାରାଳୟରୁ ଫିବାମାତ୍ରେ ନିଜର ପ୍ରେମିକ ଲିସାଣ୍ଡର ନିକଟରେ ଉପସ୍ଥିତ ହୋଇ ସମସ୍ତ ଘଟଣା ଜଣାଇଲା । ଲିସାଣ୍ଡର ବୁଝିପାରିଲେ, ହର୍ମିଆ ଡିମେଟ୍ରିଅସ୍‌ଙ୍କୁ ବିବାହ ନକଲେ ତାଙ୍କର ପ୍ରାଣଦଣ୍ଡ ନିଶ୍ଚିତ ।

ଲିସାଣ୍ଡର ଘୋର ଦୁଃଖରେ ପଡ଼ି ଚିନ୍ତାକରି ଏହି ବିପଜ୍ଜନକ ପରିସ୍ଥିତିରୁ ମୁକ୍ତି ପାଇବାର ଗୋଟିଏ ଫନ୍ଦା ସ୍ଥିରକଲେ । ଏଥେନ୍ସ-ଠାରୁ କିଛି ଦୂରରେ ତାଙ୍କର ଜଣେ ମାଉସୀ ବାସ କରୁଥିଲେ । ଏହି ନିୟମ କେବଳ ଏଥେନ୍ସର ସୀମା ମଧ୍ୟରେ ଚଳୁଥିବାରୁ ତାଙ୍କ

ମାଉସୀଙ୍କ ଗ୍ରାମରେ ଏହି ନିୟମର ଭୟ ନଥିଲା । ସେ ହର୍ମିଆଙ୍କୁ ପ୍ରସ୍ତାବ ଦେଲେ—"ଏଥେନ୍ସ ସହରର ପ୍ରାନ୍ତରେ ଗୋଟିଏ ଶ୍ରେଷ୍ଠ ବନ ଅଛି । ସେଠାରେ ଆମେ ହେଲେନାସହ ଅନେକ ଥର ଆମୋଦ-ପ୍ରମୋଦ କରିଥିବାର ମନେଥିବ । ତୁମେ ଆଜି ରାତିରେ ପିତାଙ୍କ ଘରୁ ପଳାଇ ଆସି ସେହି ବନରେ ପହଞ୍ଚିଲେ ମୋତେ ଦେଖିବାକୁ ପାଇବ । ଦୁହେଁଯାକ ସାଙ୍ଗ ହୋଇ ସେଠାରୁ ମୋର ମାଉସୀଙ୍କ ଘରକୁ ଚାଲିଯିବା ଓ ସେହିଠାରେ ଆମ ଦୁହିଙ୍କର ବିବାହ ହେବ ।"

ହର୍ମିଆ ଆନନ୍ଦରେ ଏହି ପ୍ରସ୍ତାବରେ ସ୍ୱୀକୃତ ହେଲେ । ସେ ନିଜର ମନୋଭାବ କେବଳ ପ୍ରିୟ ବାନ୍ଧବୀ ହେଲେନାଙ୍କ ଛଡ଼ା ଅନ୍ୟ କାହା ନିକଟରେ ପ୍ରକାଶ କରି ନଥିଲେ । ମାତ୍ର ହେଲେନା ଯୁବତୀ-ସୁଲଭ ଚପଳତାରେ ଗୋଟିଏ ଭୀଷଣ ଅବସ୍ଥା ସୃଷ୍ଟି କଲେ ।

ହେଲେନା ଡିମେଟ୍ରିଅସ୍‌ଙ୍କ ପାଖକୁ ଯାଇ ହର୍ମିଆ ଓ ଲିସାଣ୍ଡରର ନଗର ପଳାଇବାକୁ ସ୍ଥିର କରିଅଛନ୍ତି ତାହା କହିଦେଲେ । ସେ ଭାବିଥିଲେ ଯେ ଏହା ଜାଣିଲେ ଡିମେଟ୍ରିଅସ୍ ହର୍ମିଆଙ୍କ ପଛେ ପଛେ ବନକୁ ଯିବେ ଏବଂ ସେ ମଧ୍ୟ ଡିମେଟ୍ରିଅସ୍‌ଙ୍କ ପଛେ ପଛେ ଯାଇ ସମସ୍ତ ଘଟନା ଦେଖି ଆନନ୍ଦ ଅନୁଭବ କରିବେ ।

ଯେଉଁ ବନ ମଧ୍ୟରେ ହର୍ମିଆ ଓ ଲିସାଣ୍ଡର ମିଳିତ ହେବା କଥା ଥିଲା, ସେହି ବନଟି କନ୍ଦର ଓ କନ୍ଦରୀମାନଙ୍କର ପ୍ରମୋଦ ଉଦ୍ୟାନ ଥିଲା । କନ୍ଦର ରାଜା ଓବେରନ୍ ଓ ରାଣୀ ଟିଟାନିଆ ରାତିରେ ନିଜନିଜର ଅନୁଚର ଓ ଅନୁଚରୀମାନଙ୍କ ସହିତ ଏଠାରେ କ୍ରୀଡ଼ା-କୌତୁକ କରୁଥିଲେ । ଦୁର୍ଭାଗ୍ୟକୁ ଯେତେବେଳକୁ କନ୍ଦର ରାଜା ଓ ରାଣୀଙ୍କ ମଧ୍ୟରେ ଗୋଟିଏ ବିଷୟରେ କନ୍ଦଳ ଲାଗିଥିଲା । ଏହି ବନରେ ରାଜା ଓ ରାଣୀଙ୍କର କଳହ ଦେଖି ଶ୍ରେଷ୍ଠ

ଗ୍ରେଟ୍ କନ୍ଦର କନ୍ଦର୍ପମାନେ ଫୁଲ ପାଖୁଡ଼ା ଭିତରେ ଲୁଚି-ଯାଉଥିଲେ ।

ଏହି କଳହର କାରଣ ଥିଲା ଅତି ସାମାନ୍ୟ । ଟିଟାନିଆଙ୍କର କୌଣସି ଦାସୀର ମୃତ୍ୟୁ ହେବାରୁ ସେ ତାର ଶିଶୁ ସନ୍ତାନଟିକୁ ଲାଳନପାଳନ କରୁଥିଲେ । ଶିଶୁଟି ଟିକିଏ ବଡ଼ ହେବାରୁ ରଜା ତାକୁ ନିଜର ଭୃତ୍ୟ କରିନେବାକୁ ଇଚ୍ଛା ପ୍ରକାଶ କଲେ । ମାତ୍ର ଟିଟାନିଆ ବାଳକଟିକୁ କୌଣସିମତେ ରଜାଙ୍କୁ ଦେବାପାଇଁ ରାଜି ନଥିଲେ ।

ସେଦିନ ରାତିରେ ଟିଟାନିଆ କେତେକ ସହଚରୀଙ୍କ ସଙ୍ଗରେ ବୁଲିବା ସେହି ବନକୁ ଆସିଥିଲେ । ସେ ଦେଖିଲେ ସେତେବେଳକୁ କନ୍ଦରରାଜ ଓବେରନ୍ ମଧ୍ୟ କେତେକ ଅନୁଚରଙ୍କ ସହିତ ସେହି ବନରେ ପହଞ୍ଚିଛନ୍ତି ।

ଉଭୟଙ୍କ ସାକ୍ଷାତ ମାତ୍ରେ ରଜା ଓ ରାଣୀଙ୍କ ମଧ୍ୟରେ କଳହ ଜାତହେଲା । କନ୍ଦର ବାଳକଟିକୁ ଦେବାପାଇଁ ରଜା ଓବେରନ୍ ରାଣୀଙ୍କୁ ଆଦେଶ ଦେଲେ । କିନ୍ତୁ ରାଣୀ ଟିଟାନିଆ ଉତ୍ତର କଲେ, "ନା, ତା କଦାପି ହୋଇ ନ ପାରେ । ସମଗ୍ର କନ୍ଦର ରାଜ୍ୟ ବଦଳରେ ମଧ୍ୟ ମୁଁ ସେ ବାଳକଟିକୁ ଦେଇପାରିବି ନାହିଁ ।" ରଜା କ୍ରୁଦ୍ଧ ହୋଇ କହିଲେ, "ଆଚ୍ଛା, ତୁମର ଯାହା ଇଚ୍ଛା ତାହା କରି-ପାର; ମାତ୍ର ଜାଣିରଖ, ରାତି ପ୍ରଭାତ ହେବା ପୂର୍ବରୁ ତୁମର ଏ କାର୍ଯ୍ୟର ଉପଯୁକ୍ତ ପରିଣାମ ଭୋଗ କରିବ ।" ଓବେରନ୍ ତା ପରେ ନିଜର ପ୍ରିୟତମ ସହଚର ଓ ମନ୍ତ୍ରୀ ପକ୍‌କୁ ଡାକି ପରାମର୍ଶ କରିବାକୁ ଲାଗିଲେ ।

ପକ୍ ବଡ଼ ଚତୁର ଓ କୌତୁକପ୍ରିୟ । ସେ ନିକଟବର୍ତ୍ତୀ ଗ୍ରାମମାନଙ୍କୁ ଯାଇ ନାନାପ୍ରକାରେ ଲୋକମାନଙ୍କୁ ହଇରାଣ କରୁଥିଲା । ବେଳେ-ବେଳେ ସେ ଲୋକଙ୍କ ଦହିହାଣ୍ଡିରେ ପଶି ନାଚଥିଲା । କନ୍ଦରମାନେ

ମାୟାରୂପୀ ହୋଇଥିବାରୁ ଗୋପାଳୁଣୀମାନେ ତାହାଙ୍କୁ ଦେଖି ପାରୁ ନ ଥିଲେ; ମାତ୍ର ଦହିରୁ ଲହୁଣୀ ନ ବାହାରିବାର ଦେଖି ଆଶ୍ଚର୍ଯ୍ୟ ହୋଇଯାଉଥିଲେ । ଆଉ କେତେବେଳେ ସେ କୃଷକମାନଙ୍କର ମଦ୍ୟପାତ୍ରରେ ପଶି କଙ୍କଡ଼ାରୂପ ଧରି ବସୁଥିଲା ଓ ବୁଢା କୃଷକ-ପତ୍ନୀ ମଦ୍ୟପାନ କଲାବେଳକୁ ତାର ଓଠରେ ଲାଗି ରହୁଥିଲା । ବୁଢା ନିଜ ଷ୍ଟୁଲ୍ ଉପରେ ବସି ଏହି ବିଚିତ୍ର ଅଭିଜ୍ଞତା ବର୍ଣ୍ଣନା କଲା-ବେଳକୁ ପକ୍ ଷ୍ଟୁଲ୍‌ଟିକୁ କୌଶଳରେ ନେଇଯାଏ ଓ ବୁଢା ତଳେ ପଡ଼ିଯାଏ । ଏଥିରେ ସମସ୍ତେ ବିଶେଷ କୌତୁକ ଅନୁଭବ କରୁଥିଲେ ।

ଓବେରନ୍ ପକ୍‌ର ଏହି ପ୍ରକୃତି ଜାଣିଥିଲେ । ସେ ତାହାକୁ କହିଲେ, "ପକ୍, ଆଜି ଗୋଟିଏ କାମ କରିବାକୁ ହେବ । ଯାଅ, ମୋ ପାଇଁ କେତୋଟି 'ଅଳସୀ-ପ୍ରୀତି' ଫୁଲ ନେଇ ଆସ । ଅଳସୀ-ପ୍ରୀତି ଫୁଲର ଅଦ୍ଭୁତ ଗୁଣ । କେହି ଶୋଇଥିବାବେଳେ ଯଦି ଏହି ଫୁଲର କିଛି ରସ ତାର ଆଖିପତାରେ ପକାଇଦିଆଯାଏ, ତେବେ ସେ ନିଦରୁ ଉଠିଲାମାତ୍ରେ ପ୍ରଥମେ ଯାହାକୁ ଦେଖିବ, ସେ ବାଘ ହେଉ, ସାପ ହେଉ, ମାଙ୍କଡ଼ ହେଉ, ତାହାକୁ ନିଶ୍ଚୟ ଭଲ ପାଇ ବସିବ । ମୁଁ ଆଜି ରାତିରେ ଏହି ଫୁଲର ରସ ରାଣୀ ଟିଟାନିଆଙ୍କ ଆଖିପତାରେ ପକାଇଦେବି । ଏହି ଫୁଲର ପ୍ରଭାବରୁ ମୁକ୍ତ ହେବାର ଉପାୟ କେବଳ ମୋତେ ଜଣାଅଛି । ରାଣୀ ଏହି ଫୁଲର ପ୍ରଭାବରୁ ମୁକ୍ତ ହେବା ପୂର୍ବରୁ ସେ ମୋତେ ପିଲାଟିକୁ ଦେବାକୁ ବାଧ୍ୟ ହେବେ । ଯାଅ, ଶୀଘ୍ର କେତୋଟି ଫୁଲ ନେଇ ଆସ ।"

ସହଜେ ପକ୍ ଏଭଳି କୌତୁକ କରିବାକୁ ଭଲ ପାଉଥିଲା । ତେଣୁ ସେ ଆନନ୍ଦରେ ଫୁଲ ଖୋଜିବାକୁ ଚାଲିଗଲା ଏବଂ ଓବେରନ୍ ତାକୁ ଅପେକ୍ଷା କରି ରହିଲେ । ଏହି ସମୟରେ କନ୍ଦର୍ପରାଜା ଓବେରନ୍ ଦେଖିପାରିଲେ ଯେ ଡେମେଟ୍ରିଅସ୍ ଓ ହେଲେନା ଉକ୍ତ ବନ

ମଧ୍ୟରେ ପ୍ରବେଶ କଲେ । ହେଲେନା ତାଙ୍କ ପଛେ ପଛେ ଗୋଡ଼ାଇ-ଥିବାରୁ ଡମେଟ୍ରିଅସ୍ ତାଙ୍କ ଉପରେ ବିରକ୍ତି ପ୍ରକାଶ କରୁଥିଲେ ଓ ହେଲେନା ତାଙ୍କର ପୂର୍ବ ପ୍ରୀତି ସ୍ମରଣ କରାଇ ଆତ୍ମସମର୍ଥନ କରୁଥିଲେ । ଶେଷରେ ଡମେଟ୍ରିଅସ୍ କ୍ରୁଦ୍ଧ ହୋଇ ହେଲେନାଙ୍କୁ ଏକାକିନୀ ଛାଡ଼ିଦେଇ ପଳାଇବାକୁ ବସିଲେ । ତହୁଁ ହେଲେନା ପ୍ରାଣପଣେ ଡମେଟ୍ରିଅସ୍ ପଛରେ ଦୌଡ଼ିବାକୁ ଲାଗିଲେ ।

ଓବେରନ୍ ଲୁଚିରହି ଦୁହିଙ୍କର କଥାବାର୍ତ୍ତା ଶୁଣିପାରିଥିଲେ ଓ ସମସ୍ତ ଘଟଣା ଦେଖିଥିଲେ । ସେ ଜାଣିପାରିଲେ ଯେ ଏହି ପ୍ରେମିକ-ପ୍ରେମିକାଙ୍କ ମଧ୍ୟରେ କୌଣସି କାରଣରୁ ମନାନ୍ତର ଉପୁଜିଛି । ତେଣୁ ସେ ଏ ଦୁହିଙ୍କ ମଧ୍ୟରେ ପୁନର୍ମିଳନ ଘଟାଇବାକୁ ମନସ୍ଥ କଲେ । ଏହି ସମୟରେ ପକ୍ ଫୁଲ ଆଣି ଉପସ୍ଥିତ ହେବାରୁ ଓବେରନ୍ କହିଲେ, "ଦେଖ, ଏ ବନ ମଧ୍ୟରେ ଜଣେ ସୁନ୍ଦରୀ ଅଛନ୍ତି । ତାଙ୍କର ବେଶଭୂଷାରୁ ଜାଣିପାରିବ ଯେ ସେ ଏଥେନ୍ସର ଜଣେ ଭଦ୍ରମହିଳା । ସେ ଯେଉଁ ଯୁବକକୁ ପ୍ରେମ କରନ୍ତି, ସେ ମଧ୍ୟ ଏହି ବନର ଅନ୍ୟ ଅଂଶରେ ଥିବେ । ଯୁବକଟି ମହିଳାଙ୍କର ପ୍ରେମ ପ୍ରତ୍ୟାଖ୍ୟାନ କରୁଥିବାରୁ ସେ ଦୁଃଖିତା । ତୁମେ ଯଦି ସେହି ଯୁବକ କୌଣସିଠାରେ ଶୋଇଥିବା ଦେଖିବ, ତେବେ ଏହି ଫୁଲର କିଛି ରସ ତାଙ୍କ ଆଖିପତାରେ ପକାଇଦେବ । ମାତ୍ର ସେ ନିଦରୁ ଉଠିଲାବେଳକୁ ଯେପରି ପ୍ରଥମେ ସେହି ଏଥେନ୍ସୀୟ ମହିଳାଙ୍କୁ ଦେଖିପାରିବେ, ତାହାର ବ୍ୟବସ୍ଥା କରିବ । ଯୁବକଙ୍କୁ ଚିହ୍ନିବାରେ କିଛି ଅସୁବିଧା ହେବନାହିଁ; କାରଣ ସେ ଏଥେନ୍ସର ଯୁବକମାନଙ୍କ ଭଳି ପୋଷାକ ପିନ୍ଧିଅଛନ୍ତି ।"

ପକ୍ ରାଜା ଓବେରନ୍ଙ୍କ ଉପଦେଶ ଅନୁସାରେ କାର୍ଯ୍ୟ କରିବ ବୋଲି ସ୍ୱୀକୃତ ହେଲା ।

ଏଣେ ଓବେରନ୍ ଅଜ୍ଞାତଭାବରେ ଏକାକୀ ରାଣୀ ଟିଟାନିଆଙ୍କ କୁଞ୍ଜରେ ପହଞ୍ଚିଲେ । ସେତେବେଳକୁ ରାଣୀ ଶୋଇବାର ଆୟୋଜନ କରୁଥିଲେ । ଏହି କୁଞ୍ଜଟି ନାନା ପ୍ରକାର ଲତା ପୁଷ୍ପରେ ପରି-ବେଷ୍ଟିତ ହୋଇଥିଲା । କେତେକ ଘନ ଲତା ପତ୍ର ଚନ୍ଦ୍ରାତପ ପରି ରହିଥିଲା। ଏହି କୁଞ୍ଜରେ ରାଣୀ ପ୍ରତ୍ୟହ ରାତ୍ରିରେ କେତେକ ସମୟ କ୍ଷୟନରେ ଅତିବାହିତ କରୁଥିଲେ ।

ରାଣୀ ଶୟନ କରିବା ପୂର୍ବରୁ ତାଙ୍କର ସହଚରୀମାନଙ୍କୁ ଆଦେଶ ଦେଲେ—ଯାଅ, କେତେ ଜଣ ଫୁଲ ଉପରେ ଲଗିଥିବା ମଇଳାକୁ ସଫାକର । ଆଉ କେତେ ଜଣ ଯାଇ ବାଦୁଡ଼ିମାନଙ୍କର ଡେଣା ସଂଗ୍ରହ କରିବ ଯେ ସେଥିରେ ମୋର ଅନୁଚରମାନଙ୍କର ଜାମା ତିଆରି ହେବ । ଆଉ କେତେଜଣ ଜଗିରହି ପେଚାଗୁଡ଼ାକୁ ଦୂରକୁ ତଡ଼ଦେବ – ସେଗୁଡ଼ାକ ଯେପରି ଚିତ୍କାର କରି ମୋର ଶୋଇବାରେ ବାଧା ନ ଦିଅନ୍ତି । ସହଚରୀମାନେ ନିଜ ନିଜ କାର୍ଯ୍ୟରେ ଚାଲିଯିବା ପରେ ରାଣୀ ଟିଟାନିଆ ଶୋଇବାକୁ ଗଲେ ।

ଏହି ଅବସରରେ ଓବେରନ୍ ଆସି କିଛି ଫୁଲରସ ରାଣୀଙ୍କ ଆଖି ପତାରେ ପକାଇ ଦେଇ କହିଲେ – ନିଦରୁ ଉଠି ପ୍ରଥମେ ଯାହାକୁ ଦେଖିବ, ତାହାକୁ ପ୍ରେମ କର ।

ଏଣେ ହର୍ମିଆ ମୃତ୍ୟୁ ଦଣ୍ଡରୁ ରକ୍ଷା ପାଇବା ଲାଗି ପିତୃଗୃହ ତ୍ୟାଗ କରି ସେହି ବନରେ ପ୍ରବେଶ କରି ଦେଖିଲେ ଯେ ଲିସାଣ୍ଡର ତାଙ୍କୁ ମାଉସୀଘରକୁ ନେଇ ଯିବା ପାଇଁ ଅପେକ୍ଷା କରି ରହିଛନ୍ତି । ଦୁର୍ଭେଦ୍ୟ ବନ ମଧ୍ୟରେ ପ୍ରାୟ ଅର୍ଦ୍ଧେକ ପଥ ଅତିକ୍ରମ କଲାବେଳକୁ ହର୍ମିଆ ନିତାନ୍ତ କ୍ଳାନ୍ତ ଓ ଅବସନ୍ନ ହୋଇପଡ଼ିଲେ । ଲିସାଣ୍ଡର ଦେଖିଲେ ହର୍ମିଆଙ୍କ ପକ୍ଷରେ ଆଉ ଅଗ୍ରସର ହେବା ସମ୍ଭବପର ନୁହେଁ । ତେଣୁ ସେ କହିଲେ,"ହର୍ମିଆ,ଏ ରାତିରେ ଆଉ

ଚାଲି ପାରିବା ନାହିଁ । ନିକଟରେ ଗୁଡ଼ିଏ ଶିଉଳି ଜମା ହୋଇଛି । ଯାଅ, ତୁମେ ତାହା ଉପରେ ଶୋଇପଡ଼ । ମୁଁ ଏଇଠାରେ ତଳେ ଶୋଉଛି । ସକାଳ ହେଲେ ଦୁହେଁଯାକ ମାଉସୀ ଘରକୁ ଯିବା । ତୁମ ପକ୍ଷରେ ବିଶ୍ରାମ ନିତାନ୍ତ ଦରକାର ।"

ଦୁହେଁ କିଛି କ୍ଷଣ ପରେ ଗଭୀର ନିଦ୍ରାରେ ମଗ୍ନ ହେଲେ । ଏହି ମଧ୍ୟରେ ପକ୍ ହେଲେନା ଓ ଡିମେଟ୍ରିଅସ୍‌ଙ୍କୁ ଖୋଜି ଖୋଜି ସେହିଠାରେ ଉପସ୍ଥିତ ହେଲା । ସେ ଦେଖିଲା ଯେ ଯୁବକ ଓ ଯୁବତୀ ଏଥେନ୍‌ସୀୟ ବେଶଭୂଷା ପରିଧାନ କରିଅଛନ୍ତି । ତେଣୁ ସେ ମନେ ମନେ ସ୍ଥିର କରିନେଲା ଏହି ଯୁବକ ଯୁବତୀ ନିଶ୍ଚୟ ଓବେରନ୍ କହିଥିବା ପ୍ରେମିକ ଓ ପ୍ରେମିକା ହୋଇଥିବେ । ତେଣୁ ଯୁବକର ଚକ୍ଷୁ ପତାରେ ସେ ଫୁଲର ରସ ପକାଇବାକୁ ମନସ୍ଥ କଲା । ତାହା ହେଲେ ନିଦରୁ ଉଠିଲା ମାତ୍ରେ ଏହି ଯୁବତୀଟି ତାର ଦୃଷ୍ଟିଗୋଚର ହେବ ଏବଂ ସେ ତାହା ପ୍ରତି ପ୍ରେମ ପ୍ରକାଶ କରିବାକୁ ବାଧ୍ୟ ହେବ । ଏହିପରି ବିଚାରି ସେ କିଛି ଫୁଲରସ ଶୋଇଥିବା ଯୁବକ ଲିସାଣ୍ଡରଙ୍କ ଆଖି ପତାରେ ପକାଇ ଦେଇ ଚାଲିଗଲା ।

ଏହି ସମୟରେ ଦୈବାତ୍ ହେଲେନା ସେଠାକୁ ଆସିଲେ । ଲିସାଣ୍ଡର ନିଦ୍ରାରୁ ଉଠିଲା ମାତ୍ରେ ପ୍ରଥମେ ହର୍ମିଆଙ୍କ ପରିବର୍ତ୍ତେ ହେଲେନାଙ୍କୁ ଦେଖିବାକୁ ପାଇଲେ । ଏହା ଫଳରେ ଏକ ବିଚିତ୍ର ଘଟଣା ଘଟିଲା । ତାଙ୍କର ହର୍ମିଆ ପ୍ରତି ଯେଉଁ ଗଭୀର ପ୍ରେମ ଥିଲା, ତାହା କେଉଁଆଡ଼େ ଉଭେଇଗଲା ଓ ସେ ହେଲେନାଙ୍କ ପ୍ରେମରେ ପଡ଼ିଗଲେ ।

ଯଦି ନିଦରୁ ଉଠି ଲିସାଣ୍ଡର ପ୍ରଥମେ ହର୍ମିଆଙ୍କୁ ଦେଖିଥାନ୍ତେ ତେବେ ପକ୍‌ର ଭ୍ରମରେ କାହାରି କିଛି କ୍ଷତି ଘଟି ନଥାନ୍ତା; କିନ୍ତୁ ଅଳସୀ-ପ୍ରୀତି ଫୁଲର ପ୍ରଭାବରେ ସେ ହର୍ମିଆଙ୍କ ପ୍ରତି ତାଙ୍କର ପ୍ରଗାଢ଼

ପ୍ରେମ କୁଆଡ଼େ ଭୁଲିଗଲେ ଓ ତାଙ୍କ ଗମ୍ଭୀର ଗର୍ଜ୍ଜନରେ ଏକାକିନୀ ବନମଧ୍ୟରେ ଗୁଡ଼ାଇଦେଇ ହେଲେନାଙ୍କ ପଛରେ ଧାଇଁବାକୁ ଲାଗିଲେ । ବାସ୍ତବରେ ଦୈବର ବସ୍ତୁର ନିକଟରେ କାହାର ଚାରା ନାହିଁ ।

ପୂର୍ବରୁ କୁହାଯାଇଅଛି ଯେ ହେଲେନା ଡିମେଟ୍ରିଅସଙ୍କ ପ୍ରତ୍ୟାଖ୍ୟାନ ସତ୍ତ୍ୱେ ତାଙ୍କୁ ଖୋଜି ଖୋଜି ବାହାରିଥିଲେ । କିନ୍ତୁ ଜଣେ ଯୁବକ ପଛେ ପଛେ ସେ କେତେ ଦୂର ଧାଇଁ ପାରିବେ ? କିଛି ସମୟ ପରେ ହେଲେନା ଆଉ ଡିମେଟ୍ରିଅସଙ୍କୁ ଦେଖି ପାରିଲେ ନାହିଁ । କେତେ ବେଳଯାଏ ଅନିର୍ଦ୍ଦିଷ୍ଟ ଭାବରେ ଏଣେ ତେଣେ ଦୌଡ଼ି ସେ ଲିସାଣ୍ଡ୍ରରଙ୍କ ପାଖରେ ପହଞ୍ଚିଥିଲେ । ଲିସାଣ୍ଡ୍ରର ତଳେ ଭୂମିଉପରେ ଶୋଇଥିବାର ଦେଖି ହେଲେନା ବଡ଼ ବିସ୍ମିତ ହେଲେ ଏବଂ ତାଙ୍କୁ ଧୀରେ ହଲାଇଦେଲେ । ଲିସାଣ୍ଡ୍ରର ଆଖି ଖୋଲି ହେଲେନାଙ୍କୁ ଦେଖିଲାମାତ୍ରେ ତାଙ୍କ ପ୍ରତି ପ୍ରେମ ପ୍ରକାଶ କରିବାକୁ ଲାଗିଲେ । ସେ କହିଲେ — "ପ୍ରିୟେ, ତୁମକୁ ଦେଖିଲା ମୁହୂର୍ତ୍ତରୁ ମୁଁ ତୁମଠାରେ ମୋର ପ୍ରାଣ ସମର୍ପଣ କରିଦେଇଛି । ତୁମର ସୌନ୍ଦର୍ଯ୍ୟ ନିକଟରେ ହର୍ମିଆର ସୌନ୍ଦର୍ଯ୍ୟ ଅତି ତୁଚ୍ଛ । ହଂସ ସହିତ ବକର କି ତୁଳନା କରାଯାଇ ପାରେ ? ତୁମକୁ ପାଇବାଲାଗି ମୁଁ ଯେ କୌଣସି ତ୍ୟାଗ କରିବାକୁ ପ୍ରସ୍ତୁତ ।"

ଏହିପରି ଉଚ୍ଛ୍ୱସିତ ପ୍ରଶଂସା ଶୁଣି ପ୍ରଥମେ ହେଲେନା ବିସ୍ମିତ ହେଲେ । ସେ ଜାଣିଥିଲେ ଯେ ତାଙ୍କର ବାନ୍ଧବୀ ହର୍ମିଆଙ୍କ ପ୍ରତି ଲିସାଣ୍ଡ୍ରର ଆସକ୍ତ । ତେଣୁ ସେ ମନେକଲେ ଯେ ଲିସାଣ୍ଡ୍ରର ତାଙ୍କୁ ପରିହାସରେ ଏପରି କହୁଅଛନ୍ତି । ସେ କହିଲେ, "ଲିସାଣ୍ଡ୍ରର, ଏପରି କହି ମୋତେ ଅପମାନ ଦେଉଛ କାହିଁକି ? ମୁଁ କଅଣ ତୁମର ଏପରି ନିର୍ଦ୍ଦୟ ପରିହାସର ପାତ୍ର ? ମୋତେ ଯେ ଡିମେଟ୍ରିଅସ୍ ପରିତ୍ୟାଗ କରି ଚାଲିଯାଉଅଛନ୍ତି ତାହା କଅଣ ମୋ ପକ୍ଷରେ

ଯଥେଷ୍ଟ ଅପମାନ ହୋଇନାହିଁ ଯେ ତୁମେ ପୁଣି ମୋତେ ବ୍ୟଙ୍ଗ ବିଦ୍ରୂପ କରୁଛ ? ମୁଁ ଭାବିଥିଲି ଲିସାଣ୍ଡର ପରର ହୃଦୟକୁ ବୁଝି-ପାରନ୍ତି । ସେ କାହାକୁ ଆଘାତ ଦିଅନ୍ତି ନାହିଁ । ଏବେ ଦେଖୁଛି ମୋର ସେ ଧାରଣା ଭ୍ରାନ୍ତ ।" ଏହିପରି କହି ସେ ସ୍ଥାନ ତ୍ୟାଗକରି ପଳାଇବାକୁ ବସିଲ । ମାତ୍ର ଲିସାଣ୍ଡର ପ୍ରେମରେ ପାଗଳ ହୋଇ ତାଙ୍କ ପଛେ ପଛେ ଧାଇଁବାକୁ ଲାଗିଲେ । ହର୍ମିଆଙ୍କ ଅବସ୍ଥା କଅଣ ହେଲା ତାହା ସେ ଲବମାତ୍ର ଚିନ୍ତା କରିବାକୁ ଉଚିତ ବୋଧ କଲେ ନାହିଁ ।

ଯଥା ସମୟରେ ହର୍ମିଆ ନିଦରୁ ଉଠି ଦେଖିଲେ ଯେ ସେ ଏକାକିନୀ, ଲିସାଣ୍ଡରଙ୍କର ଦେଖାନାହିଁ । ସେ ବ୍ୟାକୁଳଭାବରେ ବନ ମଧ୍ୟରେ ଏଣେ ତେଣେ ଭ୍ରମଣ କରିବାକୁ ଲାଗିଲେ । ଲିସାଣ୍ଡର କୁଆଡ଼େ ଗଲେ, କଅଣ କଲେ, ଏହି ଚିନ୍ତା ତାଙ୍କୁ ବିଚଳିତ କରି ପକାଇଲା ।

ଏଥିମଧ୍ୟରେ ଡିମେଟ୍ରିଅସ୍ ହର୍ମିଆଙ୍କର କିମ୍ବା ନିଜର ପ୍ରତିଦ୍ୱନ୍ଦୀ ଲିସାଣ୍ଡରଙ୍କର ଦେଖା ନ ପାଇ ଏଣେ ତେଣେ ବୁଲି କ୍ଳାନ୍ତ ହୋଇ ଗୋଟିଏ ବୃକ୍ଷମୂଳରେ ଶୋଇପଡ଼ିଲେ । ଓବେରନ୍ ପକ୍‌ଠାରୁ ଯାହା ଶୁଣିଥିଲେ ସେଥିରୁ ଜାଣିପାରିଥିଲେ ଯେ ପକ୍ ଯାହାଙ୍କ ଆଖିରେ ଅଳସୀ ପ୍ରୀତି ଫୁଲର ରସ ପକାଇଅଛି, ସେ ଜଣେ ଅନ୍ୟ ଲୋକ । ବର୍ତ୍ତମାନ ଓବେରନ୍ ପ୍ରକୃତ ଯୁବକ ଡିମେଟ୍ରିଅସ୍‌କୁ ଶୋଇଥିବାର ଦେଖି ଉକ୍ତ ଫୁଲର କିଛି ରସ ନେଇ ତାଙ୍କର ଆଖି ଉପରେ ପକାଇଦେଲେ । ଅତି ଅଳ୍ପ ସମୟ ପରେ ତାଙ୍କର ନିଦ୍ରା ଭଙ୍ଗ ହେଲାମାତ୍ରେ ହେଲେନାଙ୍କୁ ଦେଖିବାକୁ ପାଇଲେ । ତେଣୁ ସେ ଫୁଲ-ରସର ପ୍ରଭାବରେ ହେଲେନାଙ୍କ ପ୍ରତି ପ୍ରେମ ନିବେଦନ କରିବାକୁ ଲାଗିଲେ । ଠିକ୍‌ସେତିକିବେଳକୁ ଲିସାଣ୍ଡର ମଧ୍ୟ ସେଠାରେ ଉପସ୍ଥିତ

ହେଲେ । ତାଙ୍କ ପଛେ ପଛେ ହର୍ମିଆ ଦୌଡ଼ୁଥିଲେ । ମାତ୍ର ସେ ହର୍ମିଆଙ୍କ ଆଡ଼କୁ ଭ୍ରୂକ୍ଷେପ ନ କରି ହେଲେନାଙ୍କୁ ପ୍ରେମନିବେଦନ ଜଣାଇବାକୁ ଲାଗିଲେ ।

ହେଲେନା ଏହିପରି ଡେମେଟ୍ରିଅସ୍ ଓ ଲିସାଣ୍ଡର ଦୁହିଁଙ୍କର ଅନୁରୋଧ ଶୁଣି ମନେକଲେ ବୋଧହୁଏ ସେ ଦୁହେଁଯାକ ହର୍ମିଆ ସହିତ ଷଡ଼ଯନ୍ତ୍ର କରି ତାଙ୍କୁ ଉପହାସ କରି ମଜା ଦେଖୁଅଛନ୍ତି ।

ହେଲେନା ଓ ହର୍ମିଆ ଉଭୟେ ଘୋର ସଂଶୟରେ ପଡ଼ିଲେ । ଏଥିପୂର୍ବରୁ ଡେମେଟ୍ରିଅସ୍ ଓ ଲିସାଣ୍ଡର ଉଭୟେ ହର୍ମିଆଙ୍କୁ ଭଲ ପାଉଥିଲେ । କିନ୍ତୁ ବର୍ତ୍ତମାନ ଦୁହେଁଯାକ ହେଲେନାର ପ୍ରଣୟ-ପ୍ରାର୍ଥୀ । ତେଣୁ ହେଲେନା ଯେପରି ବିସ୍ମିତ ହେଲେ, ହର୍ମିଆ ମଧ୍ୟ ସେହିପରି ଦୁଃଖିତ ହେଲେ । ପୂର୍ବରୁ ହର୍ମିଆ ଓ ହେଲେନାଙ୍କ ମଧ୍ୟରେ ପ୍ରଗାଢ଼ ବନ୍ଧୁତ୍ୱ ଥିଲେହେଁ ଏବେ ଦୁହେଁ ପରସ୍ପର ମଧ୍ୟରେ ଝଗଡ଼ାଝାଟି ହେବାକୁ ଲାଗିଲେ । ହେଲେନା କହିଲେ, "ହର୍ମିଆ, ତୁ କେଡ଼େ ନିର୍ଦ୍ଦୟ ! ତୋର ପ୍ରରୋଚନାରେ ଲିସାଣ୍ଡର ମୋର ବୃଥା ପ୍ରଶଂସା ଛଳରେ ବ୍ୟଙ୍ଗବିଦ୍ରୂପ କରୁଅଛନ୍ତି । ତୋର ପ୍ରେମିକ ଡେମେଟ୍ରିଅସ୍ ମୋତେ ଏ ପର୍ଯ୍ୟନ୍ତ ଘୃଣାକରି ଆସୁଥିଲେ । ସେ ତୋରି ପ୍ରେରଣାରେ ମୋତେ ସ୍ୱର୍ଗର ଅପ୍ସରା ବୋଲି କହି ଥଟ୍ଟା କରୁଅଛନ୍ତି । ମୁଁ ପରା ତୋର ପ୍ରିୟ ବାନ୍ଧବୀ ? ମୋତେ ଏପରି ଅପଦସ୍ଥ କରିବା ପାଇଁ ତୁ ପୁଣି ପୁରୁଷମାନଙ୍କର ସାହାଯ୍ୟ ନେଲୁ ? ସ୍କୁଲରେ ପଢ଼ିଲାବେଳୁ ଆମ ଭିତରେ ଯେଉଁ ଅକୃତ୍ରିମ ସ୍ନେହ ଓ ବନ୍ଧୁତା ଥିଲା, ତାହା ଏକବାରେ ଭୁଲିଗଲୁ କିପରି ? ଆମେ ପରା ଏତେଦିନ ଏକାଠି ଚଳି ଆସିଥିଲେ— ଏକାଠି ପାଠପଢ଼ା, ଏକାଠି ଖିଆପିଆ, ଏକାଠି ଗୀତ ଶିଖା । ମୋତେ ଏପରି ହଇରାଣ କରିବା କଅଣ ତୋ ପକ୍ଷରେ ଉଚିତ ?"

ହର୍ମିଆ ଉତ୍ତର କଲେ—ତୋର କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଯାଉଛି । ମୁଁ ତୋତେ ଆଦୌ ଘୃଣା କରେ ନାହିଁ; ବରଂ ତୁ ମୋତେ ଘୃଣା କରୁ ।

ହେଲେନା ଆଉ ସମ୍ଭାଳି ନ ପାରି କହିଲେ—ସତେ ! ମୋ ପଛରେ ଯେତେ ଥଟ୍ଟା କରିପାରୁ କର । ତୋର ଯଦି ଟିକିଏ ହେଲେ ଲଜ୍ଜା ଥାନ୍ତା, କି ଭଦ୍ରତା ଥାଆନ୍ତା, ତେବେ ତୁ ମୋ ପ୍ରତି ଏଭଳି ବ୍ୟବହାର କରନ୍ତୁ ନାହିଁ ।

ହେଲେନା ଓ ହର୍ମିଆ ଏହିପରି କଳି କରୁଥିବା ବେଳେ ହେଲେନାକୁ ପାଇବା ଲାଗି ଲିସାଣ୍ଡର ଓ ଡିମେଟ୍ରିଅସ୍‌ଙ୍କ ମଧ୍ୟରେ ବିବାଦ ଏତେଦୂର ବଢ଼ିଗଲା ଯେ ସେମାନେ ଏ ଦୁହିଁଙ୍କୁ ଛାଡିଦେଇ ବନ ମଧ୍ୟରେ ପରସ୍ପର ଯୁଦ୍ଧ କରିବାକୁ ବାହାରିପଡ଼ିଲେ ।

ଯୁବକ ଦୁହେଁ ଚାଲିଯିବାର ଦେଖି ହେଲେନା ଓ ହର୍ମିଆ ମଧ୍ୟ ପରସ୍ପରଠାରୁ ଦୂରକୁ ଯାଇ ବନମଧ୍ୟରେ ପୂର୍ବପରି ବୁଲି ନିଜ ନିଜର ପ୍ରେମିକଙ୍କୁ ଖୋଜିବାକୁ ଲାଗିଲେ ।

ବନରାଜ ଓବେରନ୍ ଓ ପକ୍ ଏମାନଙ୍କର କଳହ ଶୁଣୁଥିଲେ । ତହୁଁ ଓବେରନ୍ କହିଲେ, "ପକ୍, ତୁମରି ଅସାବଧାନତା ହେତୁ ଏତେ କାଣ୍ଡ ଘଟିଲା । ଅଥବା ତୁମେ ମଜା ଦେଖିବା ଲାଗି ଜାଣିଶୁଣି ଏପରି କରିଛ ।" ପକ୍ ଉତ୍ତର କଲା, "ନା ମହାରାଜ, ଏ ମୋର ଇଚ୍ଛାକୃତ ଭୁଲ ନୁହେଁ । ଆପଣ ମୋତେ କହିଥିଲେ, ଏଥେନ୍‌ସୀୟ ପୋଷାକରୁ ମୁଁ ସେହି ଯୁବକକୁ ଚିହ୍ନିପାରିବି । ତେବେ ମୋର ଅପରାଧ କଅଣ ? ଯାହାହେଉ, ଦୁଃଖର କାରଣ ନାହିଁ । ଏମାନଙ୍କର ବାଦାନୁବାଦ ଓ କଳହ ଦେଖି ବେଶ୍ ଆନନ୍ଦ ମିଳୁଛି ।"

ଓବେରନ କହିଲେ, "ବର୍ତ୍ତମାନ ଦେଖିଲ ଯେ ଡେମେଟ୍ରିଅସ୍ ଓ ଲିସାଣ୍ଡର ପରସ୍ପର ଯୁଦ୍ଧ କରିବାକୁ ବନ ମଧ୍ୟରେ ଗୋଟିଏ ଉପଯୁକ୍ତ ସ୍ଥାନ ଖୋଜିବାପାଇଁ ଚାଲିଗଲେଣି । ଏହାର ପରିଣାମ କି ଭୟଙ୍କର ହେବ ଟିକିଏ ଚିନ୍ତା କର । ତେଣୁ ତୁମେ ଶୀଘ୍ର ଯାଇ ଏପରି ଏକ ଘନ କୁହୁଡ଼ି ସୃଷ୍ଟି କରିଦିଅ ଯେପରିକି ସେ ଦୁହେଁ ପରସ୍ପରକୁ ଦେଖି ପାରିବେ ନାହିଁ । ତୁମେ ଲିସାଣ୍ଡରର ସ୍ୱର ଅନୁକରଣ କରି ଡେମେଟ୍ରିଅସକୁ ବିଦ୍ରୂପ କରିବ । ତାହା ହେଲେ ସେ ତୁମକୁ ଲିସାଣ୍ଡର ମନେକରି ତୁମ ପାଖକୁ ଚାଲିଆସିବ । ପୁଣି ଅନ୍ୟ ଏକ ସ୍ଥାନରୁ ସେହିପରି ଡେମେଟ୍ରିଅସର ସ୍ୱରରେ ଲିସାଣ୍ଡରକୁ ଯୁଦ୍ଧ ପାଇଁ ଆହ୍ୱାନ କରିବ । ଲିସାଣ୍ଡର ସେଆଡ଼କୁ ଅଗ୍ରସର ହେବ । ଫଳତଃ ଦୁହେଁଯାକ ପରସ୍ପରଠାରୁ ଅଧିକ ଦୂରବର୍ତ୍ତୀ ହୋଇଯିବେ । ଏହିପରି କିଛି ସମୟ କଲେ ଦୁହେଁଯାକ କ୍ଳାନ୍ତ ହୋଇ ବନ ମଧ୍ୟରେ ଶୋଇପଡ଼ିବେ । ମୁଁ ଅନ୍ୟ ଗୋଟିଏ ଫୁଲ ତୁମକୁ ଦେଉଛି । ଲିସାଣ୍ଡର ଶୋଇଥିବା ଅବସ୍ଥାରେ ଏହି ଫୁଲର ରସ ତା ଆଖିରେ ପକାଇଦେବ । ତାହାହେଲେ ସେ ନିଦରୁ ଉଠିଲାବେଳକୁ ତାର ହେଲେନା ପ୍ରତି ପ୍ରେମ ଆଉ ନ ଥିବ ଓ ସେ ପୂର୍ବପରି ହର୍ମିଆକୁ ପାଇବା ପାଇଁ ଅଧୀର ହୋଇପଡ଼ିବ । ଫଳରେ ଯୁବକଦ୍ୱୟ ନିଜ ନିଜର ପ୍ରେମିକାକୁ ଫେରିପାରିବେ । ଯାହା ସବୁ ଏଥିମଧ୍ୟରେ ଘଟିଯାଇଛି, ସେସବୁ ସେମାନଙ୍କୁ ସ୍ୱପ୍ନପରି ବୋଧ ହେବ । ପକ୍, ଶୀଘ୍ର ଯାଇ ମୋର ଆଦେଶ ପାଳନ କର । ମୁଁ ଯାଏ ଟିଟାନିଆ କାହାକୁ ଭଲପାଇ ବସିଛନ୍ତି ଦେଖି ଆସେ ।"

ଟିଟାନିଆ କୁଞ୍ଜରେ ଶୋଇଥିବାବେଳେ ରାଜା ଓବେରନ ଦେଖିବାକୁ ପାଇଲେ ଜଣେ ବିଦୂଷକ ବନ ମଧ୍ୟରେ ପଥ ହରାଇ ଗୋଟିଏ ଗଛମୂଳେ ଶୋଇଛି । ଓବେରନ ଭାବିଲେ ଯେ ଏହି

ବିଦୂଷକଙ୍କୁ ରାଣୀଙ୍କର ପ୍ରେମିକ କରାଇପାରିଲେ ବେଶ ମଜା ହେବ । ମଜା ଦେଖିବା ପାଇଁ ଓବେରନ୍ ବିଦୂଷକର ଗଳାଠାରୁ ତାର ମୁଣ୍ଡଟି ନେଇଯାଇ ସେଠାରେ ଗୋଟିଏ ଗଧର ମୁଣ୍ଡ ଖଞ୍ଜି ଦେଲେ । କନ୍ଦମାନଙ୍କ ପକ୍ଷରେ ଏପରି କରିବା କଷ୍ଟକର ନୁହେଁ; ମାତ୍ର ମୁଣ୍ଡ ପରିବର୍ତ୍ତନ କଲାବେଳକୁ ସେ ନିଦରୁ ଉଠି-ପଡ଼ିଲା ଓ ସଙ୍ଗେ ସଙ୍ଗେ ରାଣୀଙ୍କ କୁଞ୍ଜରେ ଉପସ୍ଥିତ ହେଲା । ତାର ମୁଣ୍ଡ ଯେ ଗୋଟିଏ ଗଧମୁଣ୍ଡରେ ପରିବର୍ତ୍ତିତ ହୋଇଅଛି ତାହା ସେ ଜାଣି ପାରି ନ ଥିଲା ।

ଟିଟାନିଆ ଚକ୍ଷୁ ଖୋଲିବାମାତ୍ରେ ଗର୍ଦ୍ଦଭ-ମୁଖ-ବିଶିଷ୍ଟ ବିଦୂଷକଙ୍କୁ ଦେଖି ଫୁଲର ରସ ପ୍ରଭାବରୁ ତାହାର ପ୍ରେମରେ ଆସକ୍ତ ହୋଇପଡ଼ିଲେ । ସେ ବିଦୂଷକଙ୍କୁ ସମ୍ବୋଧନ କରି କହିଲେ, "ଆହା, କି ମନୋହର ପୁରୁଷ ମୋ ସମ୍ମୁଖରେ ଉପସ୍ଥିତ । ସ୍ୱୟଂ କାମଦେବ ତୁମ ନିକଟରେ ହାରିଯିବେ । ମୋର ଆଶା, ତୁମର ବୁଦ୍ଧି ତୁମର ସୌନ୍ଦର୍ଯ୍ୟର ଅନୁରୂପ ହୋଇଥିବ ।"

ବିଦୂଷକ କହିଲା—ଯଦି ଏ ବନ ମଧ୍ୟରୁ ବାହାରିଯିବାର ବୁଦ୍ଧି ମତେ ମିଳେ ତେବେ ଯଥେଷ୍ଟ । ଆଉ ବେଶି ବୁଦ୍ଧିର ପ୍ରୟୋଜନ ନାହିଁ ।

ସେତେବେଳକୁ ରାଣୀ ଟିଟାନିଆ ଏତେ ଦୂର ପ୍ରେମାସକ୍ତ ହୋଇପଡ଼ିଥିଲେ ଯେ, ସେ ବିଦୂଷକଙ୍କୁ ଅନୁରୋଧ କରି କହିଲେ, "ପ୍ରିୟତମ, ଏ ବନ ଛାଡ଼ି କୁଆଡେ ଯିବ ? ମୁଁ ସାଧାରଣ କନ୍ଦରୀ ନୁହେଁ । ମୁଁ ହେଉଛି କନ୍ଦରୀମାନଙ୍କର ରାଣୀ । ଆସ, ମୋର କୁଞ୍ଜରେ ଆନନ୍ଦରେ ରହ । ମୋର ଦାସ ଓ ଦାସୀମାନେ ତୁମର ସେବାରେ ରହିଥିବେ ।"

ରାଣୀ ଗୃହଜାତ କନ୍ୟାଙ୍କୁ ଡାକି କହିଲେ, "ତୁମେମାନେ ଏହି ମହାନ୍ ଭଦ୍ରବ୍ୟକ୍ତିଙ୍କ ସେବାରେ ନିଯୁକ୍ତ ହୁଅ । ତାଙ୍କ ଆଗରେ କ୍ରୀଡ଼ା-କୌତୁକ ଦେଖାଇ ତାଙ୍କର ମନ ହରଣ କରିବା, ତାଙ୍କୁ ଅଙ୍ଗୁର ଓ ଅନ୍ୟ ସୁସ୍ୱାଦୁ ଫଳ ଖୁଆଇବା, ତାଙ୍କ ପାଇଁ ମହୁ ଫେଣାରୁ ମହୁ ସଂଗ୍ରହ କରି ଆଣିବା—ଏ ସବୁ ହେଉଛି ତୁମର କାମ ।"

ଏହାପରେ ଭୃତ୍ୟମାନଙ୍କୁ ଆଦେଶ ଦେଇ ରାଣୀ ବିଦୂଷକଙ୍କୁ କହିଲେ, "ଏବେ ଆସ, ଆମେ ଦୁହେଁ ଏକତ୍ର ବସିବା । ତୁମର ଗଣ୍ଡଦେଶରେ ଯେଉଁ ସୁନ୍ଦର କେଶ ଅଛି, ସେଥିରେ ହାତ ବୁଲାଇ ମୁଁ ଟିକିଏ ଆନନ୍ଦ ଉପଭୋଗ କରେ । ତୁମର ଦୀର୍ଘ କର୍ଣ୍ଣଯୁଗଳକୁ ଚୁମ୍ବନ କଲେ ମୁଁ ସ୍ୱର୍ଗସୁଖ ଅନୁଭବ କରିବି ।"

ବିଦୂଷକ ରାଣୀଙ୍କର ଆଦର-ଯତ୍ନ ପ୍ରତି ଦୃଷ୍ଟି ନ ଦେଇ ନିଜର ନୂଆ ଚାକରମାନଙ୍କ ଉପରେ ଆଧିପତ୍ୟ ଦେଖାଇବାକୁ ଲାଗିଲା । ସେ ଜଣକୁ କହିଲା—ମୋର ମୁଣ୍ଡକୁ କୁଣ୍ଡାଇଥାଅ । ଆଉ ଜଣକୁ ଆଦେଶ ଦେଲା—ମହୁଫେଣାରୁ ମହୁ ନେଇ ଆସ । ତୃତୀୟ ଜଣକୁ ଆଦେଶ ଦେଲା—ତୁ ଯାଇ ପ୍ରଥମ ଭୃତ୍ୟକୁ ମୋର ମୁଣ୍ଡ କୁଣ୍ଡାଇବାରେ ସାହାଯ୍ୟ କର । ମୋ ମୁହଁରେ ଦାଢ଼ି ଗୁଡ଼ାକ ଖୁବ୍ ବଢ଼ିଗଲା ପରି ଲାଗୁଛି । ତତେ ଆଜି ଭଣ୍ଡାରି ପାଖକୁ ଯିବାକୁ ହେବ । ଏହିପରି ପ୍ରତ୍ୟେକଙ୍କୁ କିଛି ନା କିଛି କାର୍ଯ୍ୟର ବରାଦ ହଆଗଲା ।

ରାଣୀ ବିଦୂଷକଙ୍କୁ କହିଲେ—"ପ୍ରିୟତମ, ତୁମକୁ କ୍ଷୁଧା ହେବଣି । କହ, ତୁମର ଜଳଖିଆ ଲାଗି କଅଣ ଆଣିବି ? ଜଣେ ଭୃତ୍ୟକୁ ପଠାଇ କୌଣସି ଗୁଣ୍ଡିଚମୂଷାର ବସାରୁ କୋମଳ କୋଳି ଅଣାଇବି କି-?"

ଏଥିମଧ୍ୟରେ ବିଦୂଷକର ମୁଣ୍ଡର ପରିବର୍ତ୍ତନ ସଙ୍ଗେ ତାର କ୍ଷୁଧାରେ ମଧ୍ୟ ପରିବର୍ତ୍ତନ ଆସିଥିଲା । ସେ କହିଲା, "କିଛି ଶୁଖିଲା ମଟରଛୁଇଁ ହେଲେ ମୋତେ ଭଲ ରୁଚିକର ଲାଗିବ । ଆଉ ଗୋଟିଏ କଥା—ମୋତେ ଟିକିଏ ନିଦ ମାଡ଼ୁଛି । ତୁମର ଲୋକଙ୍କୁ କହିଦିଅ ଯେ ସେମାନେ ଯେପରି ମୋର ନିଦ୍ରାରେ ବାଧା ନ ଘଟାନ୍ତି ।"

ରାଣୀ କହିଲେ—ଉତ୍ତମ ପ୍ରସ୍ତାବ । ମୁଁ ତୁମର ପ୍ରେମରେ ଆଜୀବନ ବନ୍ଧା ରହିଲି । ଆସ, ମୋର ବାହୁ ଉପରେ ମୁଣ୍ଡ ଦେଇ ଶୋଇପଡ଼ ।

ରାଜା ଓବେରନ୍ ଦେଖିଲେ ଯେ ରାଣୀଙ୍କ ବାହୁ ଉପରେ ମୁଣ୍ଡ ରଖି ବିଦୂଷକ ଶୋଇରହିଛି । ସେ ରାଣୀଙ୍କୁ ବ୍ୟଙ୍ଗ ବିଦ୍ରୂପ କରି କହିଲେ—"ଏ କଅଣ ? ତୁମର ଆଦର ସୋହାଗ ଅଜାଡ଼ି ଦେବାପାଇଁ କଅଣ ଜଗତରେ ଏଇ ଗଧଟି ଛଡ଼ା ଆଉ କେହି ମିଳିଲେ ନାହିଁ ?"

ରାଣୀ ଉତ୍ତର ଦେବେ କଅଣ, ସେ ତ ବିଦୂଷକର ଗଧ ମୁଣ୍ଡରେ ଫୁଲର ତୋଡ଼ା ସଜାଇ ନିଜ ବାହୁ ଉପରେ ରଖିଥିଲେ ।

ଏହିପରି କିଛି ସମୟ ଯାଏ ରାଣୀଙ୍କ ସହିତ ପରିହାସ କଲା-ପରେ ସେ ସେହି ପାଳିତ କନ୍ୟାର ବାଳକଟିକୁ ନେବାକୁ ଇଚ୍ଛା ପ୍ରକାଶ କଲେ । ରାଜା ତାଙ୍କର ଏତେ ଦୁର୍ବଳତା ଜାଣି ପାରିଥିଲେ । ତେଣୁ ସେ ଲଜ୍ଜାରେ ରାଜାଙ୍କ କଥା ଅନୁସାରେ ବାଳକଟିକୁ ଦେବାକୁ ସ୍ୱୀକୃତ ହେଲେ ।

ରାଜାଙ୍କର ପ୍ରଧାନ ଉଦ୍ଦେଶ୍ୟ ସାଧିତ ହେଲା । ସେ ମଜା ଦେଖିବାଲାଗି ରାଣୀଙ୍କୁ ଯେଉଁ ହାସ୍ୟାସ୍ପଦ ଅବସ୍ଥାରେ ପକାଇଥିଲେ, ସେଥିପାଇଁ ତାଙ୍କ ମନରେ ଏବେ ଦୟା ହେଲା । ତେଣୁ ସେ ଅନ୍ୟ ଫୁଲଟିର କିଛି ରସ ନେଇ ରାଣୀଙ୍କ ଆଖିରେ ପକାଇଦେଲେ ।

ସଙ୍ଗେ ସଙ୍ଗେ ରାଣୀଙ୍କର ଚେତନା ଆସିଲା । ସେ ଯେ କପରି ଗୋଟାଏ ଗଧପ୍ରତି ଏପରି ଆସକ୍ତ ହୋଇପଡ଼ିଥିଲେ ତାହା ଭାବି ଆଶ୍ଚର୍ଯ୍ୟ ହେଲେ । ବର୍ତ୍ତମାନ ସେ ଉକ୍ତ ଗଧକୁ ଘୃଣା କରି ତା'ଆଡ଼କୁ ଆଦୌ ଚାହିଁଲେ ନାହିଁ ।

ଓବେରନ୍ ତନ୍ତୁବାୟର ଗଧମୁଣ୍ଡଟି କାଢ଼ିନେଇ ତାହାର ନିଜ ମୁଣ୍ଡଟି ଫେରାଇଦେଲେ । ରାଜା ଓ ରାଣୀଙ୍କ ମଧ୍ୟରେ ମନୋମାଳିନ୍ୟ ଦୂର ହୋଇଗଲା । ତହୁଁ ରାଜା ରାଣୀଙ୍କ ଆଗରେ ସମସ୍ତ ଘଟନା ବର୍ଣ୍ଣନା କଲେ ଓ ଦୁହେଁଯାକ ମିଳି ଦୁଇ ପ୍ରେମିକ ପ୍ରେମିକା ଯୁଗଳଙ୍କ ଅବସ୍ଥା କଅଣ ହେଲା ଦେଖିବାକୁ ବାହାରିଲେ ।

ଅଳ୍ପଦୂର ଯିବା ପରେ ସେମାନେ ଦେଖିବାକୁ ପାଇଲେ ଯେ ଲିସାଣ୍ଡର-ହର୍ମିଆ ଏବଂ ଡିମେଟ୍ରିଅସ୍-ହେଲେନା ତୃଣଶଯ୍ୟା ଉପରେ ପରସ୍ପର ନିକଟରେ ଶୋଇଛନ୍ତି । ପକ୍ ଏଥିମଧ୍ୟରେ ଲିସାଣ୍ଡରର ଆଖିରେ ଅନ୍ୟ ଫୁଲର ରସ ପକାଇସାରିଥିଲା ଓ କୌଶଳରେ ସମସ୍ତଙ୍କୁ ଗୋଟିଏ ସ୍ଥାନକୁ ଆଣିଥିଲା ।

ହର୍ମିଆ ନିଦରୁ ଉଠି ଦେଖିଲେ ଯେ ସେ ଲିସାଣ୍ଡରଙ୍କ ନିକଟରେ ଶୋଇଛନ୍ତି । ତାଙ୍କର ବିସ୍ମୟର ସୀମା ରହିଲା ନାହିଁ । ଲିସାଣ୍ଡର ମଧ୍ୟ କମ୍ ବିସ୍ମିତ ହେଲେ ନାହିଁ । ଦୁହେଁଯାକ ଗତରାତିର ଘଟନା ବିଷୟରେ ଚିନ୍ତା କରିବାକୁ ଲାଗିଲେ । ଏସବୁ ଘଟନା ସତ୍ୟ କି ସ୍ୱପ୍ନ—ଏହି ପ୍ରଶ୍ନ ଦୁହିଁଙ୍କ ମନରେ ଜାଗିଲା ।

ଡିମେଟ୍ରିଅସ୍ ଓ ହେଲେନା ମଧ୍ୟ ନିଦରୁ ଉଠି ପରସ୍ପର ପ୍ରେମାଳାପ କରିବାକୁ ଲାଗିଲେ ।

ହେଲେନା ଓ ହର୍ମିଆଙ୍କ ମଧ୍ୟରେ ଯେଉଁ ବିବାଦ ଉପୁଜିଥିଲା, ତାହା କେଉଁଆଡ଼େ ଉଭେଇଗଲା । ଦୁହେଁ ପୁଣି ପରସ୍ପର ପ୍ରତି ବନ୍ଧୁ ବ୍ୟବହାର ଦେଖାଇବାକୁ ଲାଗିଲେ । ସମସ୍ତେ ପୂର୍ବର ଈର୍ଷା

ଭୁଲିଗଲେ । ବର୍ତ୍ତମାନ ଚିନ୍ତା ପଡ଼ିଲା, କିପରି ହର୍ମିଆଙ୍କର ପିତାଙ୍କ ମତ ପରିବର୍ତ୍ତନ କରିବାକୁ ହେବ ସେ କିପରି ନିଜ କନ୍ୟାର ମୃତ୍ୟୁଦଣ୍ଡ ଦାବୀ କରିବେ ନାହିଁ । ଡିମେଟ୍ରିଅସ୍ ଇଜିଅସ୍‌ଙ୍କୁ ଏ ବିଷୟରେ ପ୍ରାର୍ଥନା କରିବାକୁ ଏଥେନସ୍‌କୁ ଯିବାକୁ ବାହାରିଲେ; କିନ୍ତୁ ତାଙ୍କୁ ବେଶୀ ଦୂର ଯିବାକୁ ହେଲାନାହିଁ । ଇଜିଅସ୍ ନିଜର କନ୍ୟା ହର୍ମିଆର ସନ୍ଧାନ ନେବାକୁ ସେହି ବନକୁ ଆସୁଥିଲେ ।

ଇଜିଅସ୍ ଜାଣିପାରିଲେ ଯେ ଡିମେଟ୍ରିଅସ୍ ତାଙ୍କ କନ୍ୟା ହର୍ମିଆକୁ ବିବାହ କରିବାକୁ ଆଉ ଇଚ୍ଛୁକ ନୁହନ୍ତି; ତେଣୁ ସେ ଲିସାଣ୍ଡର ସହିତ ହର୍ମିଆର ବିବାହକୁ ଆନନ୍ଦରେ ସମର୍ଥନ କଲେ । ଯେଉଁ ଦିନ ହର୍ମିଆର ପ୍ରାଣଦଣ୍ଡ ହୋଇଥାନ୍ତା, ସେହି ଦିନ ସେ ଦୁହିଙ୍କର ବିବାହ ହେବ ବୋଲି ସ୍ଥିର ହେଲା । ଠିକ୍ ସେହି ଦିନ ମଧ୍ଯ ଡିମେଟ୍ରିଅସ୍ ଓ ହେଲେନାଙ୍କର ବିବାହ ହେବାର ସ୍ଥିର କରାଗଲା ।

କିନ୍ନରରାଜ ଓବେରନ୍ ଓ ତାଙ୍କର ରାଣୀ ଟିଟାନିଆ ଅଦୃଶ୍ୟ ଭାବରେ ରହି ଏହିସବୁ ଘଟନା ଦେଖୁଥିଲେ । ସମସ୍ତଙ୍କ ମନ ଏବେ ଆନନ୍ଦରେ ପୂର୍ଣ୍ଣ । କିନ୍ନର ଓ କିନ୍ନରୀମାନେ ବିବାହ ଦିନ ଆମୋଦ-ପ୍ରମୋଦ କରିବେ ବୋଲି ସ୍ଥିର କଲେ । କିନ୍ନର-ରାଜ୍ୟରେ ଆନନ୍ଦ ଉଚ୍ଛ୍ୱାସ ଖେଳିଗଲା ।

# ଯାହା ତୁମର ଇଚ୍ଛା

ଏକସମୟରେ ଫ୍ରାନ୍ସ ରାଜ୍ୟ ଅନେକଗୁଡ଼ିଏ ପ୍ରଦେଶରେ ବିଭକ୍ତ ଥିଲା ଏବଂ ପ୍ରତ୍ୟେକ ପ୍ରଦେଶ ଜଣେ ଜଣେ ଡିଉକ୍‌ଙ୍କଦ୍ୱାରା ଶାସିତ ହେଉଥିଲା । ଏହିପରି ଗୋଟିଏ ପ୍ରଦେଶରେ ଜଣେ ଡିଉକ୍ ଥିଲେ; କିନ୍ତୁ ପ୍ରକୃତପକ୍ଷରେ ସେ ପ୍ରଦେଶର ଡିଉକ୍ ନ ଥିଲେ । ନିୟମ ଅନୁସାରେ କୌଣସି ଡିଉକ୍‌ଙ୍କ ମୃତ୍ୟୁ ପରେ ତାଙ୍କ ବଡ଼ପୁଅ ଡିଉକ୍ ହେବା କଥା; ମାତ୍ର ଉକ୍ତ ଡିଉକ୍ ବଡ଼ଭାଇଙ୍କୁ ବଳପୂର୍ବକ ବିତାଡ଼ିତ କରି ନିଜେ ଡିଉକ୍ ହୋଇଥିଲେ ।

ବିତାଡ଼ିତ ଡିଉକ୍ କେତେଜଣ ବିଶ୍ୱସ୍ତ ଅନୁଚରଙ୍କୁ ସଙ୍ଗରେ ନେଇ ଆର୍ଡେନ ନାମକ ଏକ ବନ ମଧ୍ୟରେ ବାସ କରୁଥିଲେ । ସେଠାରେ ତାଙ୍କର ଯେଉଁ ପ୍ରିୟ ବନ୍ଧୁମାନେ ଥିଲେ, ସେମାନେ ସ୍ୱେଚ୍ଛାରେ ରାଜ୍ୟରୁ ଚାଲିଯାଇ ପ୍ରକୃତ ଡିଉକ୍‌ଙ୍କ ସହିତ ସକଳ ପ୍ରକାର ଦୁଃଖକଷ୍ଟ ସହ୍ୟ କରୁଥିଲେ । ଏଣେ ସେମାନଙ୍କର ଧନସମ୍ପତ୍ତିଦ୍ୱାରା ଅତ୍ୟାଚାରୀ ଡିଉକ୍ ନିଜକୁ ଅଧିକ ଧନଶାଳୀ କରୁଥିଲେ । ମାତ୍ର ଅଭ୍ୟାସବଶତଃ ସେମାନେ ବନର ଏହି ଦୁଃଖମୟ ପ୍ରାକୃତିକ ଜୀବନକୁ ରାଜସଭାର ଆଡ଼ମ୍ବରପୂର୍ଣ୍ଣ କୃତ୍ରିମ ଜୀବନଠାରୁ ଅଧିକ ସୁଖକର ମନେକରିବାକୁ ଲାଗିଲେ । ଏହି ବନ ମଧ୍ୟରେ ସେମାନେ ଶିକାର କରି ଜୀବିକା ନିର୍ବାହ କରୁଥିଲେ । ସ୍ୱାଧୀନ ଓ ସ୍ୱଚ୍ଛନ୍ଦ ଜୀବନ ଏପରି ସୁଖମୟ ବୋଧହେଉଥିଲା ଯେ ରାଜସଭାର କେତେକ ଯୁବକ ଉକ୍ତ ବନକୁ ଯାଇ ସେଠାରେ ସମୟ କ୍ଷେପଣ କରୁଥିଲେ । ଗ୍ରୀଷ୍ମଋତୁରେ ସେମାନେ ବୃକ୍ଷଛାୟାରେ ଶୋଇରହି ହରିଣ-ହରିଣୀମାନଙ୍କର କ୍ରୀଡ଼ା କୌତୁକ ଦେଖି ଆନନ୍ଦ

ଅନୁଭବ କରୁଥିଲେ । ବୋଧହୁଏ ଥିଲା, ଯେପରିକି ଏ ବନ ହେଉଛି ସେମାନଙ୍କର ଘର । ଖାଦ୍ୟ ପାଇଁ ବନ୍ୟଜନ୍ତୁମାନଙ୍କୁ ବଧ କଲାବେଳେ ଡିଜକ୍ ଓ ତାଙ୍କ ଅନୁଚରମାନେ ଦୁଃଖ ଅନୁଭବ କରୁଥିଲେ । କିନ୍ତୁ ସେମାନଙ୍କୁ ବଧ କରିବା ଛଡ଼ା ଅନ୍ୟ ଉପାୟ ନ ଥିଲା । ଶୀତକାଳରେ ଶୀତଳ ପବନ ବହିଆସି ସେମାନଙ୍କ ଶରୀରକୁ କମ୍ପାଇଦିଏ । ଡିଜକ୍ ଧୈର୍ଯ୍ୟସହକାରେ ସେ ଶୈତ୍ୟକୁ ସହିଯାଉଥିଲେ । ସେ କହୁଥିଲେ – "ଏ ଯେଉଁ ହୃତ୍‌କମ୍ପକାରୀ ଶୀତଳ ପବନ ବହୁଛି, ସେଇ ହେଉଛି ପ୍ରକୃତ ପରାମର୍ଶଦାତା । ସେ କାହାରିକୁ ତୋଷାମଦ କରି ଜାଣେନା । ମୋର ପ୍ରକୃତ ଅବସ୍ଥା ଯାହା, ସେ ଜଣାଇଦେଉଅଛି । ଅବଶ୍ୟ ଶୀତଳ ପବନ ଦେହରେ କଣ୍ଟା ପରି ଫୋଡ଼ିଯାଉଅଛି; କିନ୍ତୁ ତା'ର କଷ୍ଟଦେବା ଶକ୍ତି ମନୁଷ୍ୟର ନିର୍ଦ୍ଦୟତା ଓ କୃତଘ୍ନତା ନିକଟରେ ନଗଣ୍ୟ । ଲୋକେ ବିପଦକୁ ଘୃଣା କରନ୍ତି; କିନ୍ତୁ ଏହି ବିପଦରୁ ମନୁଷ୍ୟ କେତେ ମଧୁର ଅଭିଜ୍ଞତା ଅର୍ଜନ କରିପାରିବ । ସାପ ଗୋଟାଏ ଘୃଣ୍ୟ ବିଷାକ୍ତ ପ୍ରାଣୀ; ମାତ୍ର ତାର ମୁଣ୍ଡର ମଣିରେ ପୁଣି ବହୁମୂଲ୍ୟ ଔଷଧ ପ୍ରସ୍ତୁତ ହୋଇଥାଏ । ତେଣୁ ବିପଦର ଶିକ୍ଷା ଦେବା କ୍ଷମତା ଅପୂର୍ବ ।" ସେ ପ୍ରକୃତି-ରାଜ୍ୟରେ ଯାହା କିଛି ଦେଖିବାକୁ ପାଉଥିଲେ, ସେଥିରୁ କିଛି ନା କିଛି ନୀତିଶିକ୍ଷା ଲାଭ କରିବାକୁ ଚେଷ୍ଟିତ ହେଉଥିଲେ । ଏହା ଫଳରେ ସେ ଜନସାଧାରଣଙ୍କ ସମାଗମଠାରୁ ଦୂରରେ ରହିଥିଲେହେଁ ବୃକ୍ଷର ନୀରବ ଭାଷା ଶୁଣିପାରୁଥିଲେ । ନିର୍ଝରର କୁଳୁକୁଳୁ ଶବ୍ଦରେ ସେ ପୁସ୍ତକର ଭାଷା ଶୁଣିପାରୁଥିଲେ; ପ୍ରସ୍ତରଠାରୁ ଉପଦେଶ ବାଣୀ ପାଇପାରୁଥିଲେ । ମୂଳତଃ ପ୍ରତ୍ୟେକ ପଦାର୍ଥର ଯେ କିଛି ନା କିଛି ସତ୍ ଉଦ୍ଦେଶ୍ୟ ରହିଛି, ତାହା ସେ ଉତ୍ତମରୂପେ ଶିକ୍ଷା କରିପାରିଥିଲେ ।

ବିଚାରପତି ଉଇଲ୍‌କ୍ସଙ୍କର ରୋଜାଲିଣ୍ଡ ନାମରେ ଏକମାତ୍ର କନ୍ୟା ଥିଲା । ମାତ୍ର ନିର୍ଦ୍ଦୟ ଡ୍ୟୁକ୍ ଫ୍ରେଡରିକ ତାହାଙ୍କୁ ପିତାଙ୍କ ସହିତ ଛାଡ଼ି ନ ଦେଇ ନିଜର କନ୍ୟା ସେଲିଆର ସହଚରୀରୂପେ ରାଜପ୍ରାସାଦରେ ରଖିଥିଲେ । ଯାହାହେଉ, ରୋଜାଲିଣ୍ଡ ଓ ସେଲିଆଙ୍କ ମଧ୍ୟରେ ପ୍ରଗାଢ଼ ବନ୍ଧୁତ୍ୱ ଜନ୍ମିଥିଲା । ଉଭୟଙ୍କର ପିତାଙ୍କ ମଧ୍ୟରେ ଥିବା ବିରୋଧ ଏ ଦୁହିଙ୍କ ବନ୍ଧୁତ୍ୱ ଉପରେ କୌଣସି ପ୍ରଭାବ ପକାଇ ପାରିନଥିଲା । ପିତା ଫ୍ରେଡେରିକ୍ ରୋଜାଲିଣ୍ଡଙ୍କ ପିତାଙ୍କ ପ୍ରତି ଅନ୍ୟାୟ କରିଥିବାରୁ ସେଲିଆ ଯଥାଶକ୍ତି ରୋଜାଲିଣ୍ଡକୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ଥିଲା ଏବଂ ତାର ଦୁଃଖ ଦୂର କରିବାକୁ ଚେଷ୍ଟା କରୁଥିଲା । ବେଳେ ବେଳେ ରୋଜାଲିଣ୍ଡର ମନରେ ଗଭୀର ଦୁଃଖ ହେଉଥିଲା ଯେ ତାର ପିତା ଅନ୍ୟାୟ ଭାବରେ ରାଜ୍ୟରୁ ବିତାଡ଼ିତ ହୋଇଅଛନ୍ତି ଓ ସେ ନିଜେ ଜଣେ ଅତ୍ୟାଚାରୀର ଅନୁଗ୍ରହରେ ପ୍ରତିପାଳିତ ହେଉଅଛି । ସେତେବେଳେ ସେଲିଆ ପ୍ରାଣପଣ ରୋଜାଲିଣ୍ଡକୁ ସାନ୍ତ୍ୱନା ଦେଇ ତାର ଦୁଃଖ ଲାଘବ କରିବାକୁ ଯତ୍ନ କରୁଥିଲା ।

ଦିନେ ସେଲିଆ ତାର ସ୍ୱଭାବସୁଲଭ କୋମଳ ସ୍ୱରରେ ରୋଜାଲିଣ୍ଡକୁ କହୁଥିଲା, "ଭଉଣୀ, ମୋ କଥା ମାନ । ବୃଥା ମନକଷ୍ଟ କଲେ କିଛି ଲାଭ ନାହିଁ । ମନକୁ ପ୍ରଫୁଲ୍ଲ କର ।" ଠିକ୍ ଏହି ସମୟରେ ଡ୍ୟୁକ୍‌ଙ୍କ ନିକଟରୁ ଜଣେ ସମ୍ବାଦବାହକ ଆସି କହିଲା, "ଆଜି ଗୋଟିଏ ମଲ୍ଲଯୁଦ୍ଧ ପ୍ରତିଯୋଗିତା ହେବାର କଥା ଅଛି । ଆପଣମାନେ ଯଦି ସେହି ମଲ୍ଲଯୁଦ୍ଧ ଦେଖିବାକୁ ଇଚ୍ଛା କରନ୍ତି, ତାହାହେଲେ ଅବିଳମ୍ବେ ରାଜପ୍ରାସାଦର ପ୍ରାଙ୍ଗଣକୁ ଆସନ୍ତୁ ।" ସେଲିଆ ଭାବିଲା, ମଲ୍ଲଯୁଦ୍ଧ ଦେଖିବାକୁ ଗଲେ ରୋଜାଲିଣ୍ଡର

ମନରେ ଟିକଏ ପରିବର୍ତ୍ତନ ଆସିବ । ତେଣୁ ସେ କହିଲ ଯେ ସେମାନେ ମଲ୍ଲ ଯୁଦ୍ଧ ଦେଖିବାକୁ ଯିବେ ।

ସେ କାଳରେ ମଲ୍ଲଯୁଦ୍ଧ ଗୋଟିଏ ଅତି ପ୍ରିୟ ଆମୋଦ ଥିଲା । ରାଜପ୍ରାସାଦରେ ରାଜକନ୍ୟା, ରାଜମହିଷୀ ଓ ସମ୍ଭ୍ରାନ୍ତ ପରିବାରର ରମଣୀମାନେ ମଧ୍ୟ ଏହି ମଲ୍ଲଯୁଦ୍ଧ ଦେଖି ଆନନ୍ଦ ଉପଭୋଗ କରୁଥିଲେ । ସେଲିଆ ଓ ରୋଜାଲିଣ୍ଡ ପ୍ରତିଯୋଗିତା ଦେଖିବାପାଇଁ ରାଜପ୍ରାସାଦର ପ୍ରାଙ୍ଗଣରେ ଉପସ୍ଥିତ ହେଲେ । କିନ୍ତୁ ସେଠାରେ ପ୍ରତିଦ୍ୱନ୍ଦ୍ୱୀଦ୍ୱୟଙ୍କୁ ଦେଖି ସେମାନଙ୍କର ଉତ୍ସାହ ଉଭେଇଗଲା । ଦୁହିଙ୍କ ମଧ୍ୟରୁ ଜଣେ ଥିଲା ହୃଷ୍ଟପୁଷ୍ଟ, ବଳିଷ୍ଠ ଓ ମଲ୍ଲଯୁଦ୍ଧରେ ନିପୁଣ । ସେ ଏଥିପୂର୍ବରୁ ମଲ୍ଲଯୁଦ୍ଧରେ ଅନେକ ପ୍ରତିଦ୍ୱନ୍ଦ୍ୱୀଙ୍କର ପ୍ରାଣନାଶ କରିଥିଲା । ଏହାର ପ୍ରତିପକ୍ଷ ଜଣକ ଥିଲା କ୍ଷୀଣକାୟ, ଅଳ୍ପବୟସ୍କ, ପୁଣି ମଲ୍ଲଯୁଦ୍ଧରେ ଅନଭିଜ୍ଞ । ଦର୍ଶକମାନେ ମନେ କରିଥିଲେ ଯେ ମଲ୍ଲଯୁଦ୍ଧରେ ଏହି ହତଭାଗ୍ୟ ଯୁବକ ନିଶ୍ଚୟ ନିହତ ହେବ ।

ସେଲିଆ ଓ ରୋଜାଲିଣ୍ଡଙ୍କୁ ଦେଖିଲାମାତ୍ରେ ଡିଉକ୍ କହିଲେ, "କିଅଣ, ତୁମେମାନେ ମଲ୍ଲଯୁଦ୍ଧ ଦେଖିବାକୁ ଆସିଲ ? କିନ୍ତୁ ମୋର ମନେହୁଏ, ଏ ପ୍ରତିଯୋଗିତା ଦେଖି ତୁମେମାନେ କିଛି ଆନନ୍ଦ ପାଇବ ନାହିଁ । ଏଇ ଯୁବକ ପ୍ରତି ମୋର ଦୟା ଆସୁଛି । ମୋ ମତରେ ତାର ଏହି ପ୍ରତିଯୋଗିତାରେ ଯୋଗଦେବା ଉଚିତ ନୁହେଁ । ତୁମେମାନେ ତାକୁ କହି ଏଥିରୁ ନିବର୍ତ୍ତାଇପାରିଲେ ଭଲ ହୁଅନ୍ତା ।"

ସେଲିଆ ଓ ରୋଜାଲିଣ୍ଡ ଡିଉକ୍‌ଙ୍କ ମତର ଯଥାର୍ଥତା ଜାଣିପାରିଲେ । ପ୍ରଥମେ ସେଲିଆ ସେହି ଯୁବକକୁ ଅନୁରୋଧ କରି କହିଲେ, "ଏପରି ଜଣେ ବଳିଷ୍ଠ ନାମଜାଦା ମଲ୍ଲ ବିରୁଦ୍ଧରେ ଯୁଦ୍ଧ କରିବାକୁ ଯିବା ତାଙ୍କ ପକ୍ଷରେ ଦୁଃସାହସିକତା ମାତ୍ର । ତେଣୁ

ଏଥିରୁ ନିବୃତ୍ତ ହେବା ଉଚିତ । ତତ୍ପରେ ରୋଜାଲିଣ୍ଡ ମଧ୍ୟ ସେହିପରି ବୁଝାଇ କହିଲେ ଯେ ଏଭଳି ମଲ୍ଲଯୁଦ୍ଧରେ ଯୋଗଦେବା ତାଙ୍କ ପକ୍ଷରେ ବିପଜ୍ଜନକ । ମାତ୍ର ଏମାନଙ୍କ ଯୁକ୍ତିରେ ଯୁବକ ମଲ୍ଲଯୁଦ୍ଧରୁ ଓହରି ଆସିବେ କଅଣ, ବରଂ କିପରି ଏମାନଙ୍କ ସମକ୍ଷରେ କୃତିତ୍ୱ ଅର୍ଜନ କରି ପ୍ରଶଂସା ଲାଭ କରିବେ ତାହାହିଁ ଚିନ୍ତା କରିବାକୁ ଲାଗିଲେ । ସେ ସେଲିଆ ଓ ରୋଜାଲିଣ୍ଡଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି କହିଲେ, "ଆପଣମାନେ ମୋର ମଙ୍ଗଳ ଚିନ୍ତା କରୁଅଛନ୍ତି, ଏହା ମୋର ମହାନ୍ ସୌଭାଗ୍ୟ । ଆପଣମାନଙ୍କ ଅନୁରୋଧ ରକ୍ଷା କରିପାରିଥିଲେ ମୁଁ ଆନନ୍ଦିତ ହୋଇଥାନ୍ତି; ମାତ୍ର ତାହା ସମ୍ଭବ ନୁହେଁ । ମୋର ଏକାନ୍ତ ଆଶା, ଆପଣମାନଙ୍କ ଶୁଭେଚ୍ଛା ଯୁଦ୍ଧକ୍ଷେତ୍ରରେ ମୋର ସହାୟକ ହେବ । ତଥାପି ଯଦି ଏହି ମଲ୍ଲଯୁଦ୍ଧରେ ମୋର ପରାଜୟ ହୁଏ, ତେବେ ମଧ୍ୟ ଆପଣମାନଙ୍କର ଦୁଃଖର କାରଣ ନାହିଁ । ମୁଁ ତ କେବେ ସମ୍ମାନ ପାଇନାହିଁ, ତେବେ ମୋର ସମ୍ମାନ ହାନି ହେବ କଅଣ ? ମୋର ମୃତ୍ୟୁରେ ମଧ୍ୟ ଦୁଃଖର କାରଣ ନାହିଁ । ମୁଁ ତ ମରିବାକୁ ପ୍ରସ୍ତୁତ ହୋଇ ଏଠାକୁ ଆସିଛି । ମୋର କେହି ବନ୍ଧୁବାନ୍ଧବ ନାହାନ୍ତି, ଯେଉଁମାନେ କି ମୋର ମୃତ୍ୟୁରେ ଦୁଃଖ ଅନୁଭବ କରିବେ । ମୋର ମୃତ୍ୟୁରେ ଜଗତର କିଛି ମାତ୍ର କ୍ଷତି ହେବନାହିଁ; ବରଂ ମୁଁ ପୃଥିବୀର ଯେଉଁ ସ୍ଥାନଟିକୁ ଅଧିକାର କରି ରହିଛି, ତାହା ଶୂନ୍ୟ କରି ଚାଲିଗଲେ ମୋଠାରୁ କେହି ଯୋଗ୍ୟତର ବ୍ୟକ୍ତି ସେହି ସ୍ଥାନ ପୂରଣ କରିବ ।"

ଯଥାସମୟରେ ମଲ୍ଲଯୁଦ୍ଧ ଆରମ୍ଭ ହେଲା । ସେଲିଆ ମନେ ମନେ ଭାବୁଥାଏ, ଯୁବକ ଯେପରି ଏହି ଯୁଦ୍ଧରେ ଆଘାତ ନ ପାଏ । କିନ୍ତୁ ରୋଜାଲିଣ୍ଡର ମନରେ ଯୁବକପ୍ରତି ସହାନୁଭୂତି ପୂରିରହିଥାଏ । ଯୁବକଟି କହିଥିଲା, ଜଗତରେ ତାର କେହି ବନ୍ଧୁବାନ୍ଧବ ନାହାନ୍ତି

ଓ ମରଣ ତା ପକ୍ଷରେ ଶ୍ରେୟସ୍କର । ରୋଜାଲିଣ୍ଡ ମନେକଲି ଯୁବକଟି ତାହାର ପରି ହତଭାଗ୍ୟ । ସେ ଏହି ଯୁବକ ବିଷୟରେ ଏତେ ଚିନ୍ତା କରୁଥିଲି ଯେ, ସେ ଅଜ୍ଞାତସାରରେ ତାହାର ପ୍ରେମରେ ପଡ଼ିଥିଲି ବୋଲି କୁହାଯାଇପାରେ ।

ଏହି ସୁନ୍ଦରୀ ଯୁବତୀଦ୍ୱୟ ତାହା ପ୍ରତି ସହାନୁଭୂତି ପ୍ରକାଶ କରୁଥିବାର ଦେଖି ଯୁବକ ଉତ୍ସାହିତ ହୋଇଉଠିଲି । ସେ ମଲ୍ଲଯୁଦ୍ଧରେ ଯେଉଁ କୃତିତ୍ୱ ପ୍ରଦର୍ଶନ କଲି, ତାହା ବିସ୍ମୟକର । ପରିଶେଷରେ ତାହାର ସବଳ ପ୍ରତିଦ୍ୱନ୍ଦ୍ୱୀ ପରାସ୍ତ ହୋଇଗଲି ଓ ଏପରି ଆଘାତ ପାଇଲି ଯେ ଅନେକ ବେଳଯାଏ ଉଠିପାରିଲି ନାହିଁ କିମ୍ବା ତା ତୁଣ୍ଡରୁ କୌଣସି କଥା ବାହାରିଲି ନାହିଁ ।

ଡିଉକ୍ ଫ୍ରେଡେରିକ୍ ଯୁବକର ସାହସ ଓ ଯୁଦ୍ଧକୌଶଳରେ ମୁଗ୍ଧ ହୋଇଯାଇଥିଲେ । ସେ ତାହାର ପରିଚୟ ମାଗିବାରୁ ଯୁବକଟି କହିଲି—

"ମୋର ନାମ ହେଉଛି ଅର୍ଲାଣ୍ଡୋ । ମୁଁ ହେଉଛି ସାର୍ ରୋଲାଣ୍ଡଙ୍କର କନିଷ୍ଠ ପୁତ୍ର ।"

ସାର୍ ରୋଲାଣ୍ଡଙ୍କର ମୃତ୍ୟୁ ହୋଇଯାଇଥିଲା; କିନ୍ତୁ ସେ ଜୀବିତ ଥିଲାବେଳେ ନିର୍ବାସିତ ଡିଉକ୍‌ଙ୍କର ଜଣେ ପ୍ରିୟତମ ବନ୍ଧୁ ଥିଲେ । ତେଣୁ ଫ୍ରେଡେରିକ୍ ଯେତେବେଳେ ଶୁଣିଲେ ଯେ ଏହି ଯୁବକ ନିର୍ବାସିତ ଡିଉକଙ୍କ ବନ୍ଧୁର ପୁତ୍ର, ସେତେବେଳେ ତା ପ୍ରତି ତାଙ୍କର ସମସ୍ତ ସହାନୁଭୂତି ଉଭେଇଗଲା ଓ ସେ ବିରକ୍ତି ପ୍ରକାଶ କରି ଚାଲିଗଲେ । ଭାଇଙ୍କର କୌଣସି ବନ୍ଧୁର ନାମ ଶୁଣିଲାମାତ୍ରେ ତାଙ୍କର ଏହିପରି କ୍ରୋଧ ଓ ବିରକ୍ତି ଜାତ ହେଉଥିଲା । ତଥାପି ଯୁବକଙ୍କର ସାହସ ଓ କୃତିତ୍ୱର ପ୍ରଶଂସା କରି ସେ କହିଲେ, "ଯଦି ଅର୍ଲାଣ୍ଡୋ

ସାର୍ ଗେଲଣ୍ଡଙ୍କର ପୁତ୍ର ନ ହୋଇ ଆଉ କାହାର ପୁତ୍ର ହୋଇ-ଥାନ୍ତେ, ତେବେ ମୁଁ ଆନନ୍ଦିତ ହୋଇଥାନ୍ତି ।"

ରୋଜାଲିଣ୍ଡ ଶୁଣିପାରିଲା ଯେ ବିଜୟୀ ଯୁବକଟି ତାହାର ନିର୍ବାସିତ ପିତାଙ୍କ ବନ୍ଧୁର ପୁତ୍ର । ତେଣୁ ସେ ଆନନ୍ଦିତା ହୋଇ ସେଲିଆକୁ କହିଲା, "ଭଉଣୀ, ମୋର ବାପା ସାର୍ ଗେଲଣ୍ଡଙ୍କୁ ଭଲ ପାଉଥିଲେ । ମୁଁ ଆଗରୁ ଏହାଙ୍କ ପରିଚୟ ପାଇଥିଲେ ସେ ମଲ୍ଲଯୁଦ୍ଧରେ ଯୋଗଦେବା ପୂର୍ବରୁ ଅଶ୍ରୁ ଢାଳି ଆହୁରି ଅନୁରୋଧ କରିଥାନ୍ତି ।"

ଏହାପରେ ସେଲିଆ ଓ ରୋଜାଲିଣ୍ଡ ଉଭୟ ଯୁବକ ନିକଟକୁ ଗଲେ । ସେତେବେଳକୁ ଡ୍ୟୁକ୍‌ଙ୍କର ଅପ୍ରତ୍ୟାଶିତ ବିରକ୍ତିରେ ସେ ଅପ୍ରତିଭ ହୋଇପଡ଼ିଥିଲା । ଦୁହେଁଯାକ ଯୁବକକୁ ଉତ୍ସାହ ବାଣୀ ଶୁଣାଇଲେ । ଯିବାବେଳକୁ ରୋଜାଲିଣ୍ଡ ଫେରିପଡ଼ି ଯୁବକର ପ୍ରଶଂସା କଲା ଓ ନିଜ ଗଳାରୁ ହାରଟିଏ କାଢ଼ି ତାହାକୁ ଦେଇ କହିଲା, "ମୋର ଏହି ହାରଟିକୁ ନିଅ । ଏହା ସାମାନ୍ୟ ଉପହାର ମାତ୍ର । ମୁଁ ଦୁରବସ୍ଥାରେ ପଡ଼ିଛି; ନଚେତ୍ ତୁମର ଉପଯୁକ୍ତ ପୁରସ୍କାର ଦେଇ ଆନନ୍ଦିତ ହୋଇଥାନ୍ତି ।"

ଦୁଇ ଭଉଣୀଙ୍କ ମଧ୍ୟରେ ଅନେକ ବେଳଯାଏ ଅଲଣ୍ଡୋ ବିଷୟରେ ଆଲୋଚନା ଚାଲିଲା । ରୋଜାଲିଣ୍ଡ ଯେପରି ସେହି ଯୁବକର ଗୁଣଗରିମାର ପ୍ରଶଂସା କଲା, ସେଥିରୁ ସେଲିଆ ବୁଝି-ପାରିଲା ଯେ ରୋଜାଲିଣ୍ଡ ଯୁବକ ପ୍ରତି ପ୍ରେମାସକ୍ତ ହୋଇପଡ଼ିଛି । ସେ କହିଲା, "ଏତେ ଶୀଘ୍ର ଜଣେ ଅପରିଚିତ ଯୁବକକୁ ହୃଦୟରେ ସ୍ଥାନ ଦେଲୁ କିପରି ?" ରୋଜାଲିଣ୍ଡ ଉତ୍ତର କଲା, "ଏହି ଯୁବକର ପିତାଙ୍କୁ ମୋର ପିତା ଅତ୍ୟନ୍ତ ଭଲପାଉଥିଲେ ।" ସେଲିଆ ଏହାର ପ୍ରତିବାଦ କରି କହିଲା, "ତୋର ପିତା ତାଙ୍କର ପିତାଙ୍କୁ ଭଲ ପାଉ

ଥିଲେ—ସେଥିରୁ କଣ ପ୍ରମାଣିତ ହେଲା ଯେ ତୁ ତାଙ୍କୁ ଭଲପାଇବୁ ? ସେପରେ ହେଲେ ମୋର ସେହି ଯୁବକକୁ ଘୃଣା କରିବା ଉଚିତ । କାରଣ ମୋର ପିତା, ତାର ପିତାକୁ ଘୃଣା କରୁଥିଲେ । ତଥାପି ମୁଁ ତ ସେ ଯୁବକଙ୍କୁ ଆଦୌ ଘୃଣା କରୁନାହିଁ; ବରଂ ତାଙ୍କର ପ୍ରଶଂସା କରୁଅଛି ।”

ସାର୍ ରୋଲାଣ୍ଡଙ୍କ ପୁଅ ଅର୍ଲାଣ୍ଡୋକୁ ଦେଖିଲାବେଳୁ ଡିଉକ୍ ଫ୍ରେଡେରିକଙ୍କ ମନରେ ଆଦୌ ଶାନ୍ତି ନଥିଲା । ନିର୍ବାସିତ ଡିଉକ୍‌ଙ୍କର ଏତେ ବନ୍ଧୁ ଅଛନ୍ତି—ଏକଥା ତାଙ୍କୁ ସହ୍ୟବୋଧ ହେଲାନାହିଁ । ପୁଣି ରୋଜାଲିଣ୍ଡ ପ୍ରତି ତାଙ୍କର ଅସନ୍ତୁଷ୍ଟ ହେବାର କେତେକ କାରଣ ଥିଲା । ନିର୍ବାସିତ ଡିଉକ୍‌ଙ୍କର କନ୍ୟାବୋଲି ଜନସାଧାରଣ ରୋଜା-ଲିଣ୍ଡ ପ୍ରତି ସହାନୁଭୂତି ପ୍ରକାଶ କରୁଥିଲେ । ଫ୍ରେଡେରିକ୍‌ଙ୍କ ପକ୍ଷରେ ଏହା ଅସହ୍ୟ ଥିଲା । ବର୍ତ୍ତମାନ ତାଙ୍କର ସବୁ କ୍ରୋଧ ରୋଜାଲିଣ୍ଡ ଉପରେ ଅଜାଡ଼ି ହୋଇପଡ଼ିଲା । ସେ ଗୃହମଧ୍ୟରେ ପ୍ରବେଶ କରି ଆଦେଶ ଦେଲେ ଯେ ରୋଜାଲିଣ୍ଡକୁ ତତ୍‌କ୍ଷଣାତ୍ ରାଜପ୍ରାସାଦ ତ୍ୟାଗ କରି ଚାଲିଯିବାକୁ ହେବ । ତାର ଉପଯୁକ୍ତ ସ୍ଥାନ ହେଉଛି ଆର୍ଡେନ୍ ବନରେ, ତାର ନିର୍ବାସିତ ପିତାଙ୍କ ନିକଟରେ ।

ପିତାଙ୍କର ଏହି ନିଷ୍ଠୁର ଆଦେଶରେ ସେଲିଆ ମର୍ମାହତ ହୋଇ କହିଲା, “ପିତା, ତା ପ୍ରତି ଏପରି ନିର୍ଦ୍ଦୟ ହୁଅନ୍ତୁ ନାହିଁ ।” କିନ୍ତୁ ଫ୍ରେଡେରିକ୍ କନ୍ୟାର ଅନୁରୋଧକୁ ଉପେକ୍ଷା କରି କହିଲେ, “ନା, ତା ହୋଇ ନପାରେ । ତାକୁ ଯେ ଆଜିଯାଏ ରାଜପ୍ରାସାଦରେ ସ୍ଥାନ ଦେଇଥିଲି, ତାହା କେବଳ ତୋରି ପାଇଁ ।” ସେଲିଆ ନିରସ୍ତ ନ ହୋଇ କହିଲା –ପିତା, ମାତ୍ର ମୁଁ ତ ସେତେବେଳେ କହି ନ ଥିଲି ଯେ ତାକୁ ମୋ ପାଖରେ ରଖ । ମୁଁ ସେତେବେଳେ ନିତାନ୍ତ ଶିଶୁ ଥିଲି; ତାର ମୂଲ୍ୟ କଅଣ ଜାଣି ନଥିଲି । ମାତ୍ର ଏଇ କେତେ

ବର୍ଷ ମଧ୍ୟରେ ମୁଁ ତାକୁ ଚହ୍ନି ପାରିଛି, ତାର ମୂଲ୍ୟ ଜାଣିଛି । ଆମେ ଦୁହେଁ ଏକାଠି ଶୋଇଛୁ, ଏକାଠି ଉଠିଛୁ, ଏକାଠି ଖାଇଛୁ, ଏକାଠି ଖେଳିଛୁ । ଏବେ ତାକୁ ଛାଡ଼ି ମୁଁ କିପରି ଏକୁଟିଆ ରହିବ ?''

ଫ୍ରେଡେରିକ କୌଣସି ଯୁକ୍ତି ଶୁଣିବାକୁ ପ୍ରସ୍ତୁତ ନଥିଲେ । ସେ କହିଲେ, ''ତୁ ତାର ଭିତରି ଉଦ୍ଦେଶ୍ୟ ଜାଣିବୁ କାହୁଁ ? ସେ ଧୈର୍ଯ୍ୟ ଧରି ଚୁପ୍‌କରି ରହିଥାଏ ସତ; ମାତ୍ର ସେଥିପାଇଁ ଲୋକେ ତା ପ୍ରତି ସହାନୁଭୂତି ଦେଖାନ୍ତି, ତା ପ୍ରତି ଅନ୍ୟାୟ କରାଯାଇଛି ବୋଲି କହନ୍ତି । ତୋର ବୁଦ୍ଧି ଥିଲେ ତୁ ତା ପାଇଁ ଯୁକ୍ତି କରନ୍ତୁ ନାହିଁ । ଦେଖିବୁ, ସେ ଏଠାରୁ ଚାଲିଗଲେ ଲୋକେ ତୋର ପ୍ରକୃତ ଗୁଣର ପରିଚୟ ପାଇପାରିବେ । ତାପାଇଁ ଆଉ କିଛି କହିବା ଦରକାର ନାହିଁ । ଜାଣିଥା, ମୋର ଆଦେଶ ଖଣ୍ଡନ ହୋଇ ନ ପାରେ ।''

ସେଲିଆ ଦେଖିଲା ଯେ ବାପାଙ୍କ ମତ ପରିବର୍ତ୍ତନ କରିବାର ଚେଷ୍ଟା ବୃଥା । ତେଣୁ ସେ ସ୍ଥିର କଲା ଯେ ସେ ସ୍ୱେଚ୍ଛାରେ ରୋଜାଲିଣ୍ଡ ସଙ୍ଗରେ ନିର୍ବାସନ ଦଣ୍ଡ ଭୋଗ କରିବ । ରାତି ଅଧରେ ଦୁଇ ଭଉଣୀ ରାଜପ୍ରାସାଦ ତ୍ୟାଗ କରି ରୋଜାଲିଣ୍ଡଙ୍କ ପିତାଙ୍କ ପାଖକୁ ଯିବାପାଇଁ ଆର୍ଡ଼େନ ବନ ଉଦ୍ଦେଶ୍ୟରେ ବାହାରିପଡ଼ିଲେ ।

ବନକୁ ଯିବା ପୂର୍ବରୁ ସେଲିଆ ପ୍ରସ୍ତାବ କଲା ଏପରି ବହୁମୂଲ୍ୟ ବସ୍ତ୍ର ଓ ଅଳଙ୍କାର ପିନ୍ଧି ବାଟରେ ଚାଲିବା ସେମାନଙ୍କ ପକ୍ଷରେ ନିରାପଦ ହେବ ନାହିଁ । ତେଣୁ ସ୍ଥିର ହେଲା ସେମାନେ ଅତି ସାଧାରଣ ଲୁଗାପଟା ପିନ୍ଧି ମଫସଲି ବାଳିକାବେଶରେ ଚାଲିଯିବେ । ରୋଜାଲିଣ୍ଡ କହିଲା, ''ସେ କଥା ସତ; ମାତ୍ର ମୁଁ ଭାବୁଛି, ଆମ ଭିତରୁ ଜଣେ ପୁରୁଷବେଶରେ ରହିଲେ ଆହୁରି ଭଲ ହେବ । ଆମେ ନିଜକୁ ଭାଇ-ଭଉଣୀ ବୋଲି ପରିଚୟ ଦେଇପାରିବା ।''

ଏ ପ୍ରସ୍ତାବଟା ସେଲିଆ ମନକୁ ପାଇଲା । ରୋଜାଲିଣ୍ଡ ଟିକିଏ ଉଚ୍ଚ । ତେଣୁ ସ୍ଥିର ହେଲା ଯେ ସେ ପୁରୁଷବେଶରେ ରହିବ ଓ ସେଲିଆ ମଫସଲି ସ୍ତ୍ରୀବେଶ ଧରିବ । ରୋଜାଲିଣ୍ଡ ଏଣିକି ଗାନିମିଡ୍ ନାମରେ ପରିଚିତ ହେବ ଓ ସେଲିଆର ନାମ ହେବ ଏଲିଆନା ।

ପଥମଧ୍ୟରେ ବ୍ୟୟପାଇଁ ସେମାନେ କିଛି ଟଙ୍କା ଓ ଅଳଙ୍କାର ଧରି ଛଦ୍ମବେଶରେ ବାହାରିପଡ଼ିଲେ । ସେମାନଙ୍କୁ ଅନେକ ପଥ ଅତିକ୍ରମ କରିବାକୁ ପଡ଼ିବ । ଆର୍ଡେନ ବନ ଡ୍ୟୁକ୍‌ଙ୍କ ରାଜ୍ୟର ସୀମା ବାହାରେ, ବହୁ ଦୂରରେ ଥିଲା ।

ରୋଜାଲିଣ୍ଡ ପୁରୁଷବେଶ ପରିଧାନ କରିବା ସଙ୍ଗେ ସଙ୍ଗେ ଯେପରି ପୁରୁଷୋଚିତ ସାହସ ଓ ଧୈର୍ଯ୍ୟ ପାଇଗଲା । ସେଲିଆ ଯେ ତାପାଇଁ ଏତେ ସ୍ୱାର୍ଥ ତ୍ୟାଗ କରିପାରିଛି, ସେଥିନିମନ୍ତେ ରୋଜାଲିଣ୍ଡ ତାପ୍ରତି ବିଶେଷ ଶ୍ରଦ୍ଧା ପ୍ରକାଶ କରୁଥିଲା । ତାର ଯେପରି କିଛି କଷ୍ଟ ନ ହୁଏ, ତାର ମନ ପ୍ରଫୁଲ୍ଲ ରହେ, ସେଥିନିମିତ୍ତ ସେ ଚେଷ୍ଟା କରୁଥିଲା ।

ଶେଷରେ ସେମାନେ ଆର୍ଡେନ ବନର ଉପକଣ୍ଠରେ ଉପସ୍ଥିତ ହେଲେ । ପଥ ମଧ୍ୟରେ ସେମାନେ ସ୍ଥାନେ ସ୍ଥାନେ ସରେଇ ଘରେ ରହୁଥିଲେ, ଦୋକାନରୁ ଖାଦ୍ୟ ଦ୍ରବ୍ୟ କିଣିବାକୁ ପାଉଥିଲେ; ମାତ୍ର ଏଣିକି ସେସବୁ ମିଳିବ କାହୁଁ ? ବାଟରେ ଏଲିଆନା ଅବସନ୍ନ ଓ କ୍ଲାନ୍ତ ହୋଇ ପଡ଼ିଲାବେଳକୁ ଗାନିମିଡ୍ ନାନାପ୍ରକାର ଗଳ୍ପ କହି ତାକୁ ଉତ୍ସାହ ଦେଉଥିଲା । ଏବେ ସେ ନିଜେ ହତୋତ୍ସାହ ହୋଇପଡ଼ିଲା । ପୁରୁଷ ପୋଷାକ ପିନ୍ଧିଥିଲେହେଁ, ସେ ସ୍ତ୍ରୀଲୋକ ପରି କାନ୍ଦିଉଠିବ ବୋଲି ଭାବିଲା । ଏଲିଆନା କହିଲା ସେ ଆଉ ଆଦୌ ଚାଲି ପାରିବ ନାହିଁ । ଗାନିମିଡ୍‌ର ମନେ-ପଡ଼ିଲା ଯେ ସେ ପୁରୁଷ ବେଶ ଧରିଛି । ପୁରୁଷର କର୍ତ୍ତବ୍ୟ ହେଉଛି ଦୁର୍ବଳା ନାରୀକୁ ସାହାଯ୍ୟ କରିବା, ତାକୁ ଆଶ୍ୱାସନା ଦେବା । ସେ

ସାହସ ଦେଖାଇ କହିଲା,"ଏଲଆନା, ଟିକଏ ଧୈର୍ଯ୍ୟ ଧରି ଚାଲ୍ । ଆମର କାଠ ଧରିଆସିଲାଣି । ଆର୍ଡେନ ବନରେ ତ ପହଞ୍ଚି ଗଲେଣି । ଆଉ ଚିନ୍ତା କଅଣ ?"

ମାତ୍ର ଏଭଳି କୃତ୍ରିମ ସାହସ, ଉତ୍ସାହ ଦେଖାଇଲେ କଅଣ କାମ ଚଳେ । ଆର୍ଡେନ ବନର କେଉଁଠାରେ ଯେ ନିବାସିତ ଡ୍ୟୁକ୍ ଅଛନ୍ତି, ତାହା କିଏ ଜାଣେ ? ସେମାନେ କିଛି ଦୂର ଚାଲି ଚାଲି ନିତାନ୍ତ କ୍ଳାନ୍ତ ଓ କ୍ଷୁଧାର୍ତ୍ତ ହୋଇ ଗୋଟିଏ ଗଛମୂଳେ ବସିପଡ଼ିଲେ । ହୁଏତ ସେମାନେ ପଥ ହରାଇ କ୍ଷୁଧା ଓ ତୃଷାରେ ପ୍ରାଣତ୍ୟାଗ କରିଥାନ୍ତେ; ମାତ୍ର ଦୈବବଶତଃ ଜଣେ ମେଷପାଳକ ସେହିବାଟେ ଯାଉ ଯାଉ ଏ ଦୁହିଙ୍କୁ ଦେଖିଲା । ଗାନମିଡ୍ ଉତ୍ସାହିତ ହୋଇ କହିଲା, "ବନ୍ଧୁ, ଆମେ କ୍ଷୁଧାରେ ନିତାନ୍ତ କାତର ହୋଇପଡ଼ିଛୁ । ପଥ ଚାଲି ଚାଲି ନିତାନ୍ତ ଅବସନ୍ନ । ଯଦି ଦୟାକରି ଅର୍ଥ ବିନିମୟରେ ହେଲେ ମଧ୍ୟ କୌଣସି ସ୍ଥାନକୁ ନେଇ ଖାଦ୍ୟ ଯୋଗାଇ ଦେଇପାରନ୍ତ ତେବେ ଆମେ ବଡ଼ କୃତଜ୍ଞ ହୁଅନ୍ତୁ । ଦେଖ, ମୋର ଏ ସାନ ଭଉଣୀଟିର ଅବସ୍ଥା କେଡ଼େ ଖରାପ ! ଖାଇବାକୁ ନ ପାଇଲେ ତାର ପ୍ରାଣ ରହିବ ନାହିଁ ।"

ଲୋକଟି କହିଲା ସେ ଜଣେ ମେଷପାଳକର ଚାକର । ଉକ୍ତ ମେଷପାଳକ ଋଣଗ୍ରସ୍ତ ହୋଇଥିବାରୁ ତାଙ୍କର ଘରଦ୍ୱାର ବନ୍ଦ ହେବାକୁ ଯାଉଛି । ତଥାପି ସେମାନେ ତା ସଙ୍ଗରେ ମେଷପାଳକ ଗୃହକୁ ଗଲେ କିଛି ସାମାନ୍ୟ ଖାଦ୍ୟ ପାଇପାରିବେ ବୋଲି ଆଶା କରାଯାଏ ।

ଅଗତ୍ୟା ଦୁହେଁଯାକ ସେହି ଲୋକର ଅନୁସରଣ କରି ମେଷପାଳକର ଗୃହରେ ଉପସ୍ଥିତ ହେଲେ । ସେମାନେ ତାହାର ଘର ଓ ମେଷଗୁଡ଼ିକ କିଣିନେଲେ ଓ ମେଷପାଳକର ଭୃତ୍ୟକୁ

ନିଜର ଭଣ୍ଡାରରୁ ସେ ରଖିଲେ । ରହିବା ଓ ଖାଇବା-ପିଇବାର ସୁବନ୍ଦୋବସ୍ତ ହେବାରୁ ସେମାନେ ସେଠାରେ ରହି ନିର୍ବାସିତ ଡ୍ୟୁକଙ୍କର ସନ୍ଧାନ ନେବାକୁ ସ୍ଥିର କଲେ ।

ଦୁହିଙ୍କର କ୍ଲାନ୍ତି ଦୂର ହୋଇଗଲା ଓ କ୍ରମେ କ୍ରମେ ସେମାନେ ଏହି ନୂତନ ଜୀବନରେ ଅଭ୍ୟସ୍ତ ହୋଇପଡ଼ିଲେ । ସେମାନେ ନିଜକୁ ମେଷପାଳକର ପୁତ୍ର କନ୍ୟା ବୋଲି ମନେ କରିବାକୁ ଲଗିଲେ । ତଥାପି ସମୟେ ସମୟେ ରୋଜାଲିଣ୍ଡ ( ଗାନିମିଡ୍ ) ମନରେ ଅର୍ଲାଣ୍ଡୋର ସ୍ମୃତି ଜାଗିଉଠୁଥିଲା । ସେ ଭାବୁଥିଲା— ଅର୍ଲାଣ୍ଡୋ କେଉଁଠାରେ ଥିବେ ? ହୁଏତ ଏଠାରୁ ବହୁ ମାଇଲ ଦୂରରେ ଥିବେ !

କିନ୍ତୁ ଦୈବାତ ଅର୍ଲାଣ୍ଡୋ ବେଶି ଦୂରରେ ନ ଥିଲେ । ସେତେବେଳକୁ ସେ ସେହି ଆର୍ଡେନ ବନର ଅନ୍ୟ ଏକ ଅଂଶରେ ଥିଲେ ।

ଅର୍ଲାଣ୍ଡୋ ସାର୍ ରୋଲାଣ୍ଡଙ୍କର କନିଷ୍ଠ ସନ୍ତାନ । ପିତାଙ୍କ ମୃତ୍ୟୁବେଳକୁ ଅର୍ଲାଣ୍ଡୋ ନିତାନ୍ତ ଶିଶୁ । ମୃତ୍ୟୁବେଳେ ସାର୍ ରୋଲାଣ୍ଡ ଶିଶୁଟିକୁ ତାର ବଡ଼ଭାଇ ଅଲିଭରଙ୍କ ହାତରେ ସମର୍ପଣ କରି କହିଥିଲେ, "ମୁଁ ସଂସାରରୁ ବିଦାୟ ନେଉଛି । ଏ ଶିଶୁଟିର ଭାର ତୁମକୁ ଦେଇଯାଉଛି । ତାକୁ ଉପଯୁକ୍ତ ଶିକ୍ଷା ଦେବ । ସେ ଯେପରି କୁଳର ମାନମର୍ଯ୍ୟାଦା ଅକ୍ଷୁଣ୍ଣ ରଖେ ।"

ଅଲିଭର ପିତାଙ୍କର ଉପଦେଶ ପ୍ରତି ଆଦୌ ଦୃଷ୍ଟି ଦେଇ-ନଥିଲା । ସେ ସାନଭାଇଟିକୁ କେବେହେଲେ ବିଦ୍ୟାଳୟକୁ ପଠାଇ ନଥିଲା । ଏପରିକି ଘରେ ତାର ଉପଯୁକ୍ତ ଖାଦ୍ୟପେୟର ବ୍ୟବସ୍ଥା କରି ନଥିଲା । ବଡ଼ଭାଇଙ୍କର ଅନାଦର ଓ ଅବହେଳା ସତ୍ତ୍ୱେ ଅର୍ଲାଣ୍ଡୋ ପିତାଙ୍କର ଅନେକଗୁଡ଼ିଏ ସୁଗୁଣ ଉତ୍ତରାଧିକାରସୂତ୍ରେ

ଲାଭ କରିଥିଲେ । ବିଦ୍ୟାଳୟର ଶିକ୍ଷା ପାଇ ନଥିଲେ ସୁଦ୍ଧା ତାଙ୍କର ଆଚରଣ ଭଦ୍ରୋଚିତ ଥିଲା । ତାଙ୍କର ଉନ୍ନତ ଶରୀର, ମଧୁର ବ୍ୟବହାର ଓ ଭଦ୍ର ଆଚରଣରେ ସମସ୍ତେ ଆପ୍ୟାୟିତ ହୋଇଯାଉଥିଲେ । ଏହା ଫଳରେ ବଡ଼ଭାଇ ଅଲିଭରଙ୍କର ଈର୍ଷା ଜାତ ହେଲା ଓ କିପରି ଅର୍ଲାଣ୍ଡୋର ମୃତ୍ୟୁ ଘଟିବ, ତାହା ସେ ଚିନ୍ତା କରିବାକୁ ଲାଗିଲେ । ଏହି ଅଲିଭରଙ୍କ ପରାମର୍ଶରେ କେତେକ ଦୁଷ୍ଟ ଲୋକ ତାଙ୍କୁ ମଲ୍ଲଯୁଦ୍ଧରେ ଯୋଗଦେବାକୁ ପ୍ରବର୍ତ୍ତାଇଥିଲେ । ଅଲିଭର ଭାବିଥିଲେ ଯେ ଏହି ମଲ୍ଲଯୁଦ୍ଧରେ ନିଶ୍ଚୟ ଅର୍ଲାଣ୍ଡୋର ମୃତ୍ୟୁ ଘଟିବ; ମାତ୍ର ତାହା ଘଟିନଥିଲା । ଅର୍ଲାଣ୍ଡୋ ରୋଜାଲିଣ୍ଡ ଓ ସେଲିଆଙ୍କୁ କହିଥିଲେ ଯେ ତାଙ୍କର ବନ୍ଧୁ ବାନ୍ଧବ କେହି ନାହାନ୍ତି; ମରଣ ତାଙ୍କର କାମ୍ୟ । ଏହିସବୁ ଘଟନା ହେଉଛି ତାହାର କାରଣ ।

ଅର୍ଲାଣ୍ଡୋ ମଲ୍ଲଯୁଦ୍ଧରେ ପ୍ରାଣ ନ ହରାଇ ଜୟଲାଭ କଲେ । ତେଣୁ ଅଲିଭରଙ୍କର ହିଂସା ଓ ବିଦ୍ୱେଷର ସୀମା ରହିଲା ନାହିଁ । ସେ କହିଉଠିଲେ—ନା; ତାର ମୃତ୍ୟୁ ଅନିବାର୍ଯ୍ୟ । ତାର ଶୋଇବା ଘରେ ଅଗ୍ନି ସଂଯୋଗ କରି-ଦବ । ତାହାହେଲେ କେହି ତାର ଜୀବନ ରକ୍ଷା କରିପାରିବେ ନାହିଁ ।

ଅଲିଭର ଏହିପରି କହୁଥିବାବେଳେ ପରିବାରର ଜଣେ ବୃଦ୍ଧ ଭୃତ୍ୟ ତାହା ଶୁଣିପାରିଥିଲା । ଏହି ପୁରାତନ ଭୃତ୍ୟ ସାର୍ ରୋଲାଣ୍ଡଙ୍କ ସମୟରୁ ଘରେ ରହିଥିଲା ଓ ଅର୍ଲାଣ୍ଡୋ ପ୍ରତି ତାର ଟିକିଏ ବେଶି ମମତା ଥିଲା । ବୃଦ୍ଧ ଏହା ଜାଣିପାରିଲାମାତ୍ରେ ଅର୍ଲାଣ୍ଡୋଙ୍କୁ ସାବଧାନ କରି କହିଲା, "ଆପଣଙ୍କୁ ଦେଖିଲାକ୍ଷଣି ମୋ ମନରେ ଆପଣଙ୍କ ପିତାଙ୍କର ସ୍ମୃତି ଜାଗ୍ରତ ହୁଏ। ଆପଣଙ୍କର ଅପରାଧ ହେଉଛି, ଆପଣ ପିତାଙ୍କ ପରି ବଳିଷ୍ଠ, ଭଦ୍ର, ସଦାନ୍ତଃସ୍ଥ ଓ ସାହସୀ । ତା ନୋହିଥିଲେ କି ଆପଣ ଏଭଳି ପରାକ୍ରାନ୍ତ ମଲ୍ଲ ସଙ୍ଗେ ଯୁଦ୍ଧ କରିବାକୁ

ଯାଇଥାନ୍ତେ ? ଆପଣଙ୍କର ଘରକୁ ଫେରିବା ଆଗରୁ ଆପଣଙ୍କ ବିଜୟ ସମ୍ବାଦ ଆସିସାରିଛି ।"

ଅର୍ଲାଣ୍ଡୋ ବୃଦ୍ଧର କଥାରେ ବିସ୍ମିତ ହୋଇ ପ୍ରଶ୍ନ କରି ବୁଝିଲେ ଯେ ଅଲିଭର ତାଙ୍କର ପ୍ରଶଂସା ସହ୍ୟ କରିନପାରି ଈର୍ଷାରେ ପୋଡ଼ିଯାଉଛି । ତେଣୁ ସେ ସେହିଦିନ ରାତ୍ରିରେ ତାଙ୍କ ଶୋଇବା ଘରେ ଅଗ୍ନି ସଂଯୋଗ କରିବାକୁ ସ୍ଥିର କରିଅଛି । ଏଥିରୁ ଉଦ୍ଧାର ପାଇବାର ଏକମାତ୍ର ଉପାୟ ହେଉଛି ଗୃହ ତ୍ୟାଗ କରି ପଳାୟନ କରିବା । ଅର୍ଲାଣ୍ଡୋଙ୍କ ନିକଟରେ ପାଥେୟ ନଥିବା ଜାଣି ବୃଦ୍ଧ ନିଜର ସଞ୍ଚିତ ଅର୍ଥ ତାଙ୍କୁ ଅର୍ପଣ କରି କହିଲେ, "ଆପଣଙ୍କ ପିତାଙ୍କଠାରୁ ମୋର ବେତନସ୍ୱରୂପ ଯାହା ପାଇଥିଲି, ତାହା ସଞ୍ଚୟ କରି ରଖି-ଅଛି । ଆପଣ ତାହା ନେଇ ଏ ସ୍ଥାନ ତ୍ୟାଗ କରି ଚାଲିଯାଆନ୍ତୁ । ଭଗବାନ ସବୁଠାରେ ଅଛନ୍ତି । ପୃଥିବୀର କ୍ଷୁଦ୍ରାଦପିକ୍ଷୁଦ୍ର ଜୀବ ମଧ୍ୟ ତାଙ୍କ ଦୟାରୁ ବଞ୍ଚିତ ନୁହେଁ । ସେ ଆପଣଙ୍କର ସହାୟ ହେବେ ।"

ଅର୍ଲାଣ୍ଡୋ ବୃଦ୍ଧଙ୍କର ହାତ ଧରି କହିଲେ, "ଆଡ଼ାମ୍, ତୁମେ ଏ ଯୁଗର ଲୋକ ନୁହଁ । ସତ୍ୟ, ଧର୍ମ, ନ୍ୟାୟ, ପ୍ରଭୁଭକ୍ତି ଏସବୁ ଗୁଣ ଆଜିକାଲି ବିରଳ । ତୁମପରି ପ୍ରଭୁଭକ୍ତ ଭୃତ୍ୟକୁ ଛାଡ଼ି ମୁଁ ଯିବି କୁଆଡେ ? ଆସ, ଦୁହେଁ ସାଙ୍ଗହୋଇ ଯିବା । ସୁଖଦୁଃଖରେ ପରସ୍ପରର ସାଥି ହୋଇ ରହିବା । ତୁମର ସଞ୍ଚିତ ଅର୍ଥ ଶେଷ ହେବା ପୂର୍ବରୁ ମୁଁ ଅର୍ଥାଗମର କୌଣସି ଉପାୟ ସ୍ଥିର କରିପାରିବି ବୋଲି ଆଶା କରୁଛି । ତେଣିକି ଆମ ଦୁଇଜଣଙ୍କର ଉଦରପୋଷଣ ଗୋଟାଏ ବଡ଼ ସମସ୍ୟା ହେବ ନାହିଁ ।"

ଅର୍ଲାଣ୍ଡୋ ଏହି ବିଶ୍ୱସ୍ତ ଭୃତ୍ୟ ଆଡ଼ାମ୍‌କୁ ସଙ୍ଗରେ ଘେନି ବାହାରିଗଲେ । ଲକ୍ଷ୍ୟ ସ୍ଥିର ନାହିଁ । ଯାଉ ଯାଉ ଦୁହେଁଯାକ

ଆର୍ଡେନ ବନରେ ପହଞ୍ଚିଲେ । ଏହିଠାରେ ସେମାନେ ଖାଦ୍ୟାଭାବ ଅନୁଭବ କଲେ । କୌଣସି ଲୋକାଳୟ ପାଇବା ଆଶାରେ ସେମାନେ ଏଣେତେଣେ ବୁଲି ବୁଲି ନିତାନ୍ତ କ୍ଳାନ୍ତ ଓ ଅବସନ୍ନ ହୋଇ ପଡ଼ିଲେ । ଶେଷରେ ଆଡ଼ାମ୍ କହିଲେ, "ମୁଁ ନିତାନ୍ତ ଦୁର୍ବଳ ହୋଇପଡ଼ୁଛି; ପାଦ ଉଠାଇବାର ଶକ୍ତି ନାହିଁ । ଖାଦ୍ୟ ଅଭାବରୁ ମୋର ପ୍ରାଣ ଚାଲିଯିବ । ଆଉ ପଦଟିଏ ମାତ୍ର ଅଗ୍ରସର ହୋଇପାରିବି ନାହିଁ ।" ଏହା କହି ବୃଦ୍ଧ ସେହିଠାରେ ବସିପଡ଼ିଲେ ।

ଅର୍ଲାଣ୍ଡୋ ବୃଦ୍ଧଙ୍କର ଏପରି ଅବସ୍ଥା ଦେଖି କାତର ହୋଇ ପଡ଼ିଲେ । ସେ ତାଙ୍କୁ ସ୍କନ୍ଧରେ ଧାରଣ କରି କିଛିଦୂର ବୋହିନେଲେ ଏବଂ ଗୋଟିଏ ଛାୟା-ଶୀତଳ ବୃକ୍ଷମୂଳରେ ଶୁଆଇଦେଇ କହିଲେ, "ଦେଖ, ଶୀତଳ ପବନ ବହୁଛି । ବିଶ୍ରାମ ନେଲା ପରେ ଦେହରେ ଟିକିଏ ବଳ ଆସିବ । ଏଥିମଧ୍ୟରେ ମୁଁ ଯାଇ କିଛି ଖାଦ୍ୟ ସଂଗ୍ରହ କରି ଆଣିବି ।"

ଅର୍ଲାଣ୍ଡୋ ଖାଦ୍ୟ ଅନ୍ୱେଷଣରେ ବନ ମଧ୍ୟରେ ବୁଲୁ ବୁଲୁ ନିର୍ବାସିତ ଡିଉକ୍‌ଙ୍କ ବାସସ୍ଥାନରେ ପହଞ୍ଚିଲେ । ସେତେବେଳକୁ ଡିଉକ୍ ଓ ତାଙ୍କର ଅନୁଚରମାନେ କେତୋଟି ବୃକ୍ଷର ଛାୟାରେ ବସି ଭୋଜନର ଉଦ୍ୟମ କରୁଥିଲେ ।

ଅର୍ଲାଣ୍ଡୋ କ୍ଷୁଧାରେ କ୍ଷିପ୍ତ ପ୍ରାୟ ହୋଇଯାଇଥିଲେ । ଖାଦ୍ୟଦ୍ରବ୍ୟ ଦେଖିଲାମାତ୍ରେ ସେ ଖଣ୍ଡା ବାହାର କରି ବଳପୂର୍ବକ ଖାଦ୍ୟ ନେବା ଅଭିପ୍ରାୟରେ କହିଲେ, "ଭୋଜନ ବନ୍ଦ କରନ୍ତୁ । ମୁଁ ନିଶ୍ଚୟ ଆପଣମାନଙ୍କର ଖାଦ୍ୟ ନେବି ।" ଡିଉକ୍ ପଚାରିଲେ, "ଯୁବକ, ତୁମେ କଣ କ୍ଷୁଧାରେ ଉତ୍ୟକ୍ତ ହୋଇପଡ଼ିଛ ନା । ଭଦ୍ରସମାଜ ସହିତ ତୁମର ପରିଚୟ ନାହିଁ ?"

ଅର୍ନେଷ୍ଟୋ ଉତ୍ତର କଲେ ଯେ ସେ କ୍ଷୁଧାରେ ମୃତପ୍ରାୟ । ତହୁଁ ଡଜକ୍ କହିଲେ, "ତେବେ ଆସ, ଆମମାନଙ୍କ ସହିତ ଭୋଜନକରି ସ୍ୱଚ୍ଛନ୍ଦରେ କ୍ଷୁଧା ନିବାରଣ କର ।" ଅର୍ନେଷ୍ଟୋ ନିଜକୁ ଲଜ୍ଜିତ ମନେକରି ଖଣ୍ଡାଟିକୁ କୋଷରେ ରଖିଦେଇ କହିଲେ, "ମୋର ବ୍ୟବହାର ପାଇଁ ମୁଁ ଦୁଃଖିତ । ମୋତେ କ୍ଷମା କରନ୍ତୁ । ମୁଁ ଦେଖିଲି ଯେ ଏ ବନରାଜ୍ୟ ରୁକ୍ଷ, କର୍କଶ; ଟିକିଏ ଜଳ ବା ଖାଦ୍ୟ ମିଳିବା ସହଜ ନୁହେଁ । ତେଣୁ ମୁଁ ଭାବିଥିଲି ଏପରି ସ୍ଥାନରେ ଯେଉଁମାନେ ଥିବେ ସେମାନେ ସଭ୍ୟସମାଜଠାରୁ ଦୂରରେ ଥିବେ । ମୁଁ ଯେ ବଳପୂର୍ବକ ଖାଦ୍ୟ ନେଇଯିବାକୁ କହୁଥିଲି, ତାହାର କାରଣ ହେଉଛି ଏହା । କିନ୍ତୁ ଯଦି ଆପଣମାନେ କେବେ ସୁଖ ସୌଭାଗ୍ୟ ଦେଖିଅଛନ୍ତି, କୌଣସି ଧର୍ମ ଅନୁଷ୍ଠାନରେ ଯୋଗ ଦେଇଅଛନ୍ତି, ଯଦି ଭଦ୍ର-ସମାଜରେ ପଙ୍‌କ୍ତି ଭୋଜନ କରିଅଛନ୍ତି, ଯଦି କେବେ ପର ଦୁଃଖରେ ଆପଣଙ୍କ ଆଖିରୁ ଲୋତକଧାର ବହିଛି, ଅନ୍ୟପ୍ରତି କରୁଣା ପ୍ରଦର୍ଶନର ମୂଲ୍ୟ ଯଦି ଜାଣିଅଛନ୍ତି, ତେବେ ଆପଣମାନେ ମୋପ୍ରତି ସଭ୍ୟଜନସୁଲଭ ଭଦ୍ରତା ଦେଖାଇପାରନ୍ତି ।"

ଡିଜକ୍ ଉତ୍ତର କଲେ, "ଆମ୍ଭେମାନେ ଯେ ଦିନେ ସୁଖ-ସୌଭାଗ୍ୟ ମଧ୍ୟରେ ଜୀବନ ଅତିବାହିତ କରିଥିଲୁ, ତାହା ସତ । ଏବେ ଆମେମାନେ ଏ ରୁକ୍ଷ ବନଜଙ୍ଗଲରେ ବାସ କରୁଅଛୁ ସତ, ମାତ୍ର ଆମେମାନେ ଏଥିପୂର୍ବରୁ ସହରି ଜୀବନରେ ଅଭ୍ୟସ୍ତ ଥିଲୁ; ଧର୍ମ ମନ୍ଦିରରେ ପୂଜା-ଉପାସନା କରୁଥିଲୁ; ଭଦ୍ରସମାଜରେ ଭୋଜନ-ଉତ୍ସବରେ ଯୋଗ ଦେଉଥିଲୁ; ପୀଡ଼ିତ ଓ ଆର୍ତ୍ତର ଦୁଃଖରେ ଆମ ଚକ୍ଷୁରୁ ଲୋତକଧାର ବହୁଥିଲା । ଅତଏବ ହେ ଯୁବକ, ତୁମେ ଆମମାନଙ୍କ ସହିତ ବସି ଉଦରତୃପ୍ତି କର ।"

ଅର୍ଲାଣ୍ଡୋ ଉତ୍ତର କଲେ, "ଆପଣମାନଙ୍କୁ ଧନ୍ୟବାଦ । ମାତ୍ର ମୋ ସାଥିରେ ଜଣେ ବୃଦ୍ଧଲୋକ ଅଛନ୍ତି । ସେ କେବଳ ସ୍ନେହର ବଶବର୍ତ୍ତୀ ହୋଇ, ନାନା କଷ୍ଟ ସହ୍ୟକରି ମୋ ସାଙ୍ଗରେ ଆସିଥିଲେ । ବୃଦ୍ଧ, ସେଥିରେ ପୁଣି କ୍ଷୁଧା । ତାଙ୍କର ସନ୍ତୋଷବିଧାନ କରିବା ପୂର୍ବରୁ ମୁଁ ଅନ୍ନଜଳ ସ୍ପର୍ଶ କରିପାରିବି ନାହିଁ ।" ତହୁଁ ଡିଉକ୍ କହିଲେ, "ଯୁବକ, ଶୀଘ୍ର ଯାଇ ତୁମର ବୃଦ୍ଧ ବନ୍ଧୁଙ୍କୁ ନେଇଆସ । ତୁମେ ଫେରିଆସିବା ପର୍ଯ୍ୟନ୍ତ ଆମେମାନେ ନ ଖାଇ ଅପେକ୍ଷା କରି ରହିବୁ ।"

ଅର୍ଲାଣ୍ଡୋ କ୍ଷିପ୍ରଗତିରେ ଯାଇ ବୃଦ୍ଧଙ୍କୁ ନେଇ ଆସିଲେ । ଡିଉକ୍ ଓ ଅନ୍ୟମାନେ ତାଙ୍କୁ ଆଦରରେ ଖୁଆଇଲେ । କିଛି ସମୟ ପରେ ତାଙ୍କ ଦେହରୁ ବଳ ଫେରିଆସିଲା ।

ଭୋଜନ ସମାପ୍ତ ହେବା ପରେ ଡିଉକ୍ ଅର୍ଲାଣ୍ଡୋଙ୍କୁ ତାଙ୍କର ପରିଚୟ ପଚାରିଲେ । ସେ ତାଙ୍କର ବନ୍ଧୁ ସାର ରୋଲାଣ୍ଡଙ୍କର ପୁତ୍ର ବୋଲି ଜାଣିପାରି ତାଙ୍କୁ ଆନନ୍ଦରେ ନିଜ ପାଖରେ ଆଶ୍ରୟ ଦେଲେ । ବୃଦ୍ଧ ଆଡାମ ମଧ୍ୟ ଡିଉକ୍‌ଙ୍କ ପାଖରେ ସ୍ଥାନ ପାଇଲା ।

ରାଜନନ୍ଦିନୀ ଓ ଏଲିଆନା ଆର୍ଡେନ ବନରେ ପ୍ରବେଶ କରି ଓ ମେଷପାଳକର ଗୃହ କିଣି ରହିବାର ଅଳ୍ପଦିନ ପରେ ଅର୍ଲାଣ୍ଡୋ ଡିଉକ୍‌ଙ୍କ ପାଖରେ ଆଶ୍ରୟ ପାଇଲେ ।

ରାଜନନ୍ଦିନୀ ଓ ଏଲିଆନା ବନ ମଧ୍ୟରେ ବୁଲି ବୁଲି ଦେଖିବାକୁ ପାଇଲେ ଯେ କେତେକ ଗଛରେ ରୋଜାଲିଣ୍ଡଙ୍କ ନାମ ଖୋଦିତ ହୋଇଅଛି; କେତେକରେ ପ୍ରେମସଙ୍ଗୀତ ଲେଖା ହୋଇ ଡାଳରେ ଝୁଲୁଅଛି । ଏହି ସଙ୍ଗୀତଗୁଡ଼ିକ ମଧ୍ୟ ସେହି ରୋଜାଲିଣ୍ଡଙ୍କ ଉଦ୍ଦେଶ୍ୟରେ ଲିଖିତ । ଏଥିରେ ସେମାନଙ୍କର ବିସ୍ମୟର ସୀମା

ରହିଲା ନାହିଁ । ଏ ନିର୍ଜନ ବନଭୂମିରେ ଏହା କପରି ସମ୍ଭବ ହେଲା ?

ଦୈବାତ୍ ଦିନେ ସେମାନେ ବନ ମଧ୍ୟରେ ଅର୍ଲାଣ୍ଡୋଙ୍କୁ ଦେଖିବାକୁ ପାଇଲେ । ତାଙ୍କ ଗଳାରେ ଥିବା ହାରଟି ଦେଖିଲାମାତ୍ରେ ସେମାନେ ତାଙ୍କୁ ଚିହ୍ନିପାରିଲେ ।

ରୋଜାଲିଣ୍ଡ ନିଜର ସରଳ ଉଦାର ବ୍ୟବହାର ଓ ସହାନୁଭୂତିରେ ଅର୍ଲାଣ୍ଡୋଙ୍କ ହୃଦୟ କିଣିନେଇଥିଲେ । ତେଣୁ ସେ ବନମଧ୍ୟରେ ବୁଲି ବୁଲି ବୃକ୍ଷମାନଙ୍କରେ ରୋଜାଲିଣ୍ଡଙ୍କର ନାମ ଖନନ କରୁଥିଲେ, ତାଙ୍କ ଉଦ୍ଦେଶ୍ୟରେ ପ୍ରେମ-ସଙ୍ଗୀତ ରଚନା କରି ଗଛଡ଼ାଳରେ ଝୁଲାଇଦେଉଥିଲେ । କିନ୍ତୁ ମେଷପାଳକ ଗାନିମିଡ଼ ଯେ ତାଙ୍କ ହୃଦୟର ରାଣୀ ରୋଜାଲିଣ୍ଡ, ଏହା ସେ ଆଦୌ କଳ୍ପନା କରି ପାରି ନ ଥିଲେ । ଯାହାହେଉ, ଏହି ସୁନ୍ଦର ଯୁବକ ପ୍ରତି ଆକୃଷ୍ଟ ହୋଇ ସେ ତାଙ୍କ ସହିତ କଥାବାର୍ତ୍ତା କରିବାକୁ ଲାଗିଲେ । ଅର୍ଲାଣ୍ଡୋ ଲକ୍ଷ୍ୟ କଲେ ଯେ ଏହି କିଶୋରର ଚେହେରା ସହିତ ରୋଜାଲିଣ୍ଡଙ୍କ ଚେହେରାର ଯଥେଷ୍ଟ ସାଦୃଶ୍ୟ ଅଛି; ମାତ୍ର ଗାନିମିଡ଼ ଟିକିଏ ଉଗ୍ରପ୍ରକୃତିକ ଓ ପରିହାସପ୍ରିୟ ବୋଧହେଉଥିଲେ । କଥା ପ୍ରସଙ୍ଗରେ ଗାନିମିଡ଼ କହିଲେ, "ଆମର ଏ ଅଞ୍ଚଳରେ କିଏ ଜଣେ ପ୍ରେମିକ ଆସି ପହଞ୍ଚିଛି । ସେ ଗଛମାନଙ୍କରେ 'ରୋଜାଲିଣ୍ଡ' ବୋଲି ଖୋଳିଛି ଓ ପ୍ରେମ-ସଙ୍ଗୀତମାନ ଲେଖି ଗଛର ଡାଳମାନଙ୍କରେ ଓହଳାଇ ଦେଇଛି । ଯଦି ସେ ପ୍ରେମିକ ସାଥିରେ ମୋର ଦେଖା-ହୁଅନ୍ତା, ମୁଁ ତାକୁ ଏପରି ଉପଦେଶ ଦିଅନ୍ତି ଯେ ତାର ସେହି ପ୍ରେମରୋଗ ଭଲ ହୋଇଯାଆନ୍ତା ।"

ଅର୍ଲାଣ୍ଡୋ ସ୍ୱୀକାର କଲେ ଯେ ସେହି ପ୍ରେମିକ ତାଙ୍କ ଛଡ଼ା ଅନ୍ୟ କେହି ନୁହେଁ । ଗାନିମିଡ଼ଙ୍କର ଉପଦେଶ ଶୁଣିବାକୁ ସେ

କହିଲେ, "ଅର୍ଲ୍ଣ୍ଡୋ ଦେଖ,ଏଇ କୁଟୀରରେ ମୁଁ ଓ ମୋର ଭଉଣୀ ଏଲିଆନା ବାସ କରୁଅଛୁ । ତୁମେ ପ୍ରତିଦିନ ଏଇଠାକୁ ଆସିବ । ମୁଁ ନିଜକୁ ରୋଜାଲିଣ୍ଡ ବୋଲି ଛଳନା କରିବା ତୁମେ ରୋଜାଲିଣ୍ଡକୁ ଯେପରି ପ୍ରେମ ନିବେଦନ କରନ୍ତ, ମୋତେ ସେହିପରି କରିବ । ସାଧାରଣତଃ ଯୁବକମାନେ ପ୍ରେମିକକୁ ଯେପରି ପ୍ରଶଂସା କରି କହନ୍ତି, ମୁଁ ତୁମକୁ ସେହିପରି କହିବ । କିଛିଦିନ ଏହିପରି କଲେ ତୁମକୁ ଏତେ ଲଜ୍ଜା ଲାଗିବ ଯେ ତୁମର ପ୍ରେମବେଗ ଘୁଞ୍ଚିଯିବ ।"

ଅର୍ଲ୍ଣ୍ଡୋ ଯେ ଗାନମିଡ଼ କଥାରେ ବିଶ୍ୱାସ କରିଥିଲେ, ତାହା ନୁହେଁ । କିନ୍ତୁ ସେ ପ୍ରତିଦିନ ସେହି କୁଡ଼ିଆକୁ ଆସି ଗାନମିଡ଼ ଓ ଏଲିଆନାଙ୍କ ସହିତ କିଛି ସମୟ କଟାଉଥିଲେ । ଅର୍ଲ୍ଣ୍ଡୋ ଯୁବକ ଗାନମିଡ଼ଙ୍କୁ ରୋଜାଲିଣ୍ଡ ବୋଲି ସମ୍ବୋଧନ କରି ପ୍ରେମନିବେଦନର ଅଭିନୟ କରୁଥିଲେ । ପ୍ରତିଦିନ ଅର୍ଲ୍ଣ୍ଡୋ ଗାନମିଡ଼ଙ୍କୁ ନିଜର ପ୍ରେମିକାଭଳି ଉଚ୍ଛ୍ୱସିତ ପ୍ରଶଂସା କରୁଥିଲେ । କିନ୍ତୁ ଏହା ଫଳରେ ଯେ ଅର୍ଲ୍ଣ୍ଡୋଙ୍କ ପ୍ରେମବେଗର ଉପଶମ ହୋଇ ନ ଥିଲା, ଏହା କହିବା ବାହୁଲ୍ୟ ମାତ୍ର ।

ଅର୍ଲ୍ଣ୍ଡୋ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ ଯେ ଏହି ଗାନମିଡ଼ ହେଉଛନ୍ତି ତାଙ୍କର ପ୍ରେମିକା ରୋଜାଲିଣ୍ଡ । ତେଣୁ ସେ ମନେ କରିଥିଲେ ଯେ ଗାନମିଡ଼ ରୋଜାଲିଣ୍ଡ ଭୂମିକାରେ ଅଭିନୟ କରୁଛନ୍ତି ମାତ୍ର । କିନ୍ତୁ ଗାନମିଡ଼ ଅର୍ଲ୍ଣ୍ଡୋଙ୍କର ପ୍ରେମପୂର୍ଣ୍ଣ କଥା ଶୁଣି ମନେ ମନେ ଆନନ୍ଦ ଅନୁଭବ କରୁଥିଲେ । ଅର୍ଲ୍ଣ୍ଡୋ ମଧ୍ୟ ନିଜ ହୃଦୟର ଭାବ ଜଣକ ପାଖରେ ପ୍ରକାଶ କରିପାରୁଛନ୍ତି ବୋଲି ମନରେ ସନ୍ତୋଷ ପାଉଥିଲେ ।

ଏହିପରି କୌତୁକରେ ଅନେକ ଦିନ କଟିଗଲା । ଏଲିଆନା ଦେଖିଲେ ଯେ ଏପରି ପ୍ରେମର ଅଭିନୟ କରି ଗାନମିଡ଼ଙ୍କର ଆନନ୍ଦ ।

ଏଥିମଧ୍ୟରେ ସେମାନେ ଅର୍ଣ୍ଣୋଙ୍କଠାରୁ ଡଜକ୍ଙ୍କର ବାସସ୍ଥାନ କେଉଁଠାରେ ତାହା ଜାଣିପାରିଥିଲେ । ମାତ୍ର ଏଲାଆନା ସେଠାକୁ ଯିବା ବିଷୟ ଉତ୍‌ଥାପନ କରି ନ ଥିଲେ; ଦେବାତ୍ ଦିନେ ଡଜକ୍ଙ୍କ ସହିତ ଗାନମିଡ଼ଙ୍କର ସାକ୍ଷାତ ହୋଇଗଲା । ତାଙ୍କର କେଉଁ କୁଳରେ ଜନ୍ମ ବୋଲି ପଚାରିବାରୁ ଗାନମିଡ ଉତ୍ତର କଲେ, "ଆପଣଙ୍କର ଯେପରି ସମ୍ଭ୍ରାନ୍ତ ପରିବାରରେ ଜନ୍ମ, ମୋର ମଧ୍ୟ ସେହିପରି ଏକ ପରିବାରରେ ଜନ୍ମ ।" ଏହା ଶୁଣି ଡଜକ୍ ଟିକିଏ ହସିଦେଲେ ମାତ୍ର । ମେଷପାଳକର ଯେ ରାଜକୁଳରେ ଜନ୍ମ, ଏହା ତାଙ୍କ କଳ୍ପନାକୁ ଆସିପାରିଲା ନାହିଁ ।

ଦିନେ ସକାଳେ ଅର୍ଣ୍ଣୋ ଗାନମିଡ଼ ପାଖକୁ ଯାଉ ଯାଉ ବାଟରେ ଜଣେ ଲୋକ ତଳେ ଶୋଇଥିବାର ଦେଖିଲେ । ଗୋଟିଏ ପ୍ରକାଣ୍ଡ ସାପ ତାର ବେକରେ ଗୁଡ଼ାଇ ହୋଇ ରହିଥିଲା । ଅର୍ଣ୍ଣୋଙ୍କୁ ଆସୁଥିବାର ଦେଖି ସାପଟା ଧୀରେ ବୁଦା ଭିତରେ ପଶି ଲୁଚିଗଲା । ଆଉ ଟିକିଏ ପାଖକୁ ଯାଇ ଅର୍ଣ୍ଣୋ ଦେଖିଲେ ଯେ ଗୋଟାଏ ସିଂହୀ ଭୂମିଉପରେ ଲେଫଟି ରହିଛି । ତାର ଆଖି ଶୋଇଥିବା ଲୋକଟି ଉପରେ । ସିଂହମାନେ ମଲା ବା ଶୋଇଥିବା ଜୀବକୁ କେବେହେଲେ ଆକ୍ରମଣ କରନ୍ତି ନାହିଁ । ସିଂହୀଟା ଛକି ରହିଥିଲା—ଲୋକଟି ଉଠିଲା ମାତ୍ରେ ତାହାକୁ ଆକ୍ରମଣ କରି ମାରିଥାନ୍ତା । ସତେ ଯେପରି କି ଲୋକଟିକୁ ଏ ଦୁଇଟି ହିଂସ୍ର ଜୀବ-ମୁଖରୁ ରକ୍ଷା କରିବାପାଇଁ ଈଶ୍ୱର ଅର୍ଣ୍ଣୋଙ୍କୁ ସେଠାକୁ ପଠାଇ ଥିଲେ । ଶୋଇଥିବା ଲୋକର ମୁହଁ କୁ ଚାହିଁ ଅର୍ଣ୍ଣୋ ଜାଣିପାରିଲେ ଯେ ସେ ହେଉଛି ତାଙ୍କର ଚିରଶତ୍ରୁ ଅଲିଭର । କ୍ଷଣକ ପାଇଁ ସେ ମନେ କଲେ ଯେ ସିଂହୀମୁଖରେ ଅଲିଭରର ମୃତ୍ୟୁ ହେଉ; କିନ୍ତୁ ପର ମୁହୂର୍ତ୍ତରେ ତାଙ୍କର ମନ ବଦଳିଗଲା । ଯେତେ ଅପକାରୀ

ହେଲେ ମଧ୍ୟ ଭାଇ । ଭାଇ ସିଂହଦ୍ୱାରା ନିହତ ହେଲେ ଚିରଦିନ ତାଙ୍କୁ ଅନୁତାପରେ ପଡ଼ିବାକୁ ହେବ । ଏହିପରି ବିଚାରି ସେ ଖଣ୍ଡା ବାହାରି କରି ସିଂହକୁ ଆକ୍ରମଣ କଲେ । ଅଳ୍ପ କାଳ ମଧ୍ୟରେ ସିଂହଟି ନିହତ ହେଲା; କିନ୍ତୁ ତାର ମରଣ ପୂର୍ବରୁ ଅର୍ଲଣ୍ଡୋର ଗୋଟିଏ ହାତକୁ କାମୁଡ଼ି କ୍ଷତବିକ୍ଷତ କରିପକାଇଥିଲା ।

ଅର୍ଲଣ୍ଡୋ ସିଂହକୁ ଆକ୍ରମଣ କରି ବଧ କରୁଥିବାବେଳେ ଅଲିଭରର ନିଦ୍ରାଭଙ୍ଗ ହେଲା । ସେ ଦେଖିଲା ଯେ ଯେଉଁ ସାନଭାଇ ପ୍ରତି ସେ ଏତେ ଦୁର୍ବ୍ୟବହାର କରିଥିଲା, ଏପରିକି ତାର ମୃତ୍ୟୁର ବ୍ୟବସ୍ଥା କରିଥିଲା, ଏବେ ସେହି ଅର୍ଲଣ୍ଡୋ ନିଜ ଜୀବନ ପ୍ରତି ଲବ-ମାତ୍ର ମାୟା ନ ରଖି ତାର ଜୀବନରକ୍ଷା ପାଇଁ ସିଂହକୁ ଆକ୍ରମଣ କରିଅଛି । ଏହି ଘଟନାରେ ତାହାର ମନ ସମ୍ପୂର୍ଣ୍ଣରୂପେ ପରିବର୍ତ୍ତିତ ହୋଇଗଲା ଓ ସେ ସାନଭାଇଠାରୁ କ୍ଷମା ମାଗିଲା । ଅବଶ୍ୟ ସେ ଦିନ ଅଲିଭର ଅର୍ଲଣ୍ଡୋକୁ ହତ୍ୟା କରିବା ଉଦ୍ଦେଶ୍ୟରେ ବନକୁ ଆସିଥିଲା; ମାତ୍ର ଏହି ଘଟନା ଫଳରେ ଦୁଇ ଭାଇଙ୍କ ମଧ୍ୟରେ ଆଜୀବନ ସ୍ନେହ ଓ ସଦ୍ଭାବ ପ୍ରତିଷ୍ଠିତ ହେଲା ।

ଅର୍ଲଣ୍ଡୋଙ୍କ ବାହୁର କ୍ଷତରୁ ଏତେ ରକ୍ତ ବହିଲା ଯେ ସେ ଦୁର୍ବଳ ହୋଇପଡ଼ିଲେ । ତେଣୁ ସେ ଅଲିଭରଙ୍କ ଦ୍ୱାରା ଗାନିମିଡ଼୍ ନିକଟକୁ ସମ୍ବାଦ ଦେବାକୁ ସ୍ଥିର କରି କହିଲେ, "ତୁମେ ସେହି ମେଷପାଳକର କୁଟୀରକୁ ଯିବ । ସେଠାରେ ଗାନିମିଡ଼ ବୋଲି ଗୋଟିଏ କିଶୋର ଅଛି । ମୁଁ ପରିହାସରେ ତାକୁ ରୋଜାଲିଣ୍ଡ ବୋଲି ଡାକେ । ତାକୁ ଏହି ଦୁର୍ଘଟନାର କଥା ଜଣାଇ କହିଦେବ ଯେ ମୁଁ ଆଜି ସେଠାକୁ ଯାଇପାରିବି ନାହିଁ ।

ଅଲିଭର କୁଟୀରକୁ ଯାଇ ଗାନିମିଡ଼ ଓ ଏଲିଆନାଙ୍କ ଆଗେ ସମସ୍ତ ଘଟନା ବର୍ଣ୍ଣନା କରି ଅର୍ଲଣ୍ଡୋ କିପରି ତାର ଜୀବନରକ୍ଷା

କରିଛନ୍ତି ତାହା କହିଲେ । ଅର୍ଲିଣ୍ଡୋର ସାହସ ଓ ଉଦାରତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ସେ ସ୍ୱୀକାର କରିଥିଲେ ଯେ ସେ ଅର୍ଲିଣ୍ଡୋ ପ୍ରତି ଘୋର ଅନ୍ୟାୟ କରିଥିଲେ; ଏପରି କି ତାଙ୍କର ପ୍ରାଣ ନେବାକୁ ଚେଷ୍ଟା କରୁଥିଲେ । କିନ୍ତୁ ଏବେ ଦୁଇଭାଇ ପରସ୍ପର ସ୍ନେହରେ ଆବଦ୍ଧ ।

ଅଲିଭର ନିଜର ଦୋଷ ସ୍ୱୀକାରପୂର୍ବକ ଅନୁତାପ କରିବାର ଦେଖି ଏଲିଆନାଙ୍କ ମନରେ ଏକ ପରିବର୍ତ୍ତନ ଆସିଲା । ସେ ତାଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଲେ । ସେ ଅନୁତପ୍ତ ଅଲିଭରଙ୍କ ପ୍ରତି ସହାନୁଭୂତି ପ୍ରକାଶ ନ କରି ରହି ପାରିଲେ ନାହିଁ । ଫଳରେ ଅଲିଭର ମଧ୍ୟ ଏଲିଆନାଙ୍କୁ ଭଲ ପାଇବାକୁ ଲାଗିଲେ । ଏଣେ ଅଲିଭର ଓ ଏଲିଆନା ପରସ୍ପରର ପ୍ରେମରେ ଆବଦ୍ଧ ହେଲାବେଳକୁ ଅର୍ଲିଣ୍ଡୋ ସିଂହଠାରୁ ଆଘାତପ୍ରାପ୍ତ ହୋଇଥିବା ସମ୍ବାଦ ଶୁଣିଲା-ମାତ୍ରେ ଗାନିମିଡ଼ ଅଚେତନ ହୋଇ ପଡ଼ିଗଲେ । କିଛି ସମୟ ପରେ ସେ ଚେତନା ଲାଭ କରି ଅଲିଭରଙ୍କୁ କହିଲେ—"ମୁଁ ନିଜକୁ ରୋଜାଲିଣ୍ଡ ବୋଲି କଳ୍ପନା କରି ଅଚୈତନ୍ୟ ହେବାର ଛଳନା କରୁଥିଲି । ଦୁର୍ଘଟନାର ସମ୍ବାଦ ପାଇ ମୁଁ କିପରି ଅଚେତନ ହେବାର ଛଳନା କରିପାରିଥିଲି, ତାହା ତୁମ ଭାଇ ଅର୍ଲିଣ୍ଡୋଙ୍କୁ କହିଦେବ ।" କିନ୍ତୁ ଅଲିଭର ଲକ୍ଷ୍ୟ କରିଥିଲେ ଯେ ଗାନିମିଡ଼ର ମୁହଁ କଳା ପଡ଼ି-ଯାଇଥିଲା । କୃତ୍ରିମ ଅଚୈତନ୍ୟରେ ଏପରି ହୁଅନ୍ତା କାହିଁ ? ସେ କହିଲେ, "ଯଦି ତୁମେ ଛଳନା କରି ଅଚୈତନ୍ୟ ହୋଇପଡ଼ିଥିଲ, ତେବେ ତୁମେ ଜଣେ ପୁରୁଷ ବୋଲି ଛଳନା କର ।" ଗାନିମିଡ଼ଙ୍କ ତୁଣ୍ଡରୁ ବାହାରି ପଡ଼ିଲା, "ମୁଁ ତ ତାହା କରୁଛି; କିନ୍ତୁ ମୋର ସ୍ତ୍ରୀ ହେବା ଉଚିତ ଥିଲା ।"

ସେଦିନ ଅଲାଭିର ଅନେକ ବେଳଯାଏ କୁଟୀରରେ ରହିଲେ । ଶେଷରେ ସେ ଅର୍ଲାଣ୍ଡୋ ପାଖକୁ ଫେରିଯାଇ ସେ ଦିନର ସମସ୍ତ ଘଟନା, ବିଶେଷତଃ ଗାନମିଡ଼ ଅଚୈତନ୍ୟ ହୋଇପଡ଼ିଯିବା ବିଷୟ ବର୍ଣ୍ଣନା କଲେ । ଅଲାଭିର ଏଲିଆନାଙ୍କ ପ୍ରେମରେ ପଡ଼ିଥିବା ବିଷୟ ମଧ୍ୟ ସେ ଗୋପନ ରଖିଲେ ନାହିଁ । ସେ କହିଲେ ଯେ ଏଲିଆନା ତାଙ୍କୁ ବିବାହ କରିବାକୁ ଇଚ୍ଛୁକ । ସେ ଆଉ ଘରକୁ ଫେରି ନ ଯାଇ ଏଲିଆନାଙ୍କ ସହିତ ଏହି କୁଡ଼ିଆ ଘରେ ଆନନ୍ଦରେ ଜୀବନ କଟାଇ ଦେବେ ଓ ସମସ୍ତ ବିଷୟ-ସମ୍ପତ୍ତିର ଭାର ଅର୍ଲାଣ୍ଡୋଙ୍କୁ ସମର୍ପଣ କରି ଦେବେ ।

ଅର୍ଲାଣ୍ଡୋ କହିଲେ, "ଭାଇ, କାଲି ତୁମର ବିବାହ ହେଲେ ଆନନ୍ଦର ବିଷୟ ହେବ । ଡିଉକ୍ ଓ ତାଙ୍କର ବନ୍ଧୁମାନଙ୍କୁ ମୁଁ ନିମନ୍ତ୍ରଣ କରି ଆଣିବି । ଯାଅ, ତୁମର ପ୍ରଣୟିନୀଙ୍କୁ ଏହି ପ୍ରସ୍ତାବରେ ରାଜି କରାଇ ଆସ । ଏଇ ଯେ ତାଙ୍କର ଭାଇ ଗାନମିଡ଼ ଏଆଡ଼କୁ ଆସୁଛନ୍ତି ।" ଅଲାଭିର ଏଲିଆନାଙ୍କ ନିକଟକୁ ଗଲେ ଏବଂ ଗାନମିଡ଼ ଆସି ଅର୍ଲାଣ୍ଡୋଙ୍କୁ ତାଙ୍କ ହାତର ଅବସ୍ଥା ବିଷୟ ପଚାରିଲେ ।

ଅର୍ଲାଣ୍ଡୋ ଓ ଗାନମିଡ଼ଙ୍କ ଭିତରେ ଅଲାଭିର ଓ ଏଲିଆନାଙ୍କ ବିବାହ ପ୍ରସଙ୍ଗ ଉଠିଲା । ଅର୍ଲାଣ୍ଡୋ କହିଲେ—"ଆସନ୍ତା କାଲି ସେ ଦୁହିଁଙ୍କର ବିବାହ ହେବ । ଯଦି ରୋଜାଲିଣ୍ଡ ଥାଆନ୍ତେ, ତେବେ ମୋର ମଧ୍ୟ ସେହି ଦିନ ବିବାହ ହୋଇପାରନ୍ତା ।"

ଗାନମିଡ଼ ଦୁଇଟି ଯାକ ବିବାହ ଏକା ଦିନରେ ହେବାର ପ୍ରସ୍ତାବକୁ ଖୁବ୍ ସମର୍ଥନ କରି କହିଲେ—"ଅର୍ଲାଣ୍ଡୋ, ତୁମେ ଯଦି ରୋଜାଲିଣ୍ଡଙ୍କୁ ପ୍ରକୃତରେ ଅନ୍ତରର ସହିତ ଭଲ ପାଉଥାଅ, ତେବେ ତୁମର ଇଚ୍ଛା ଅବଶ୍ୟ ପୂର୍ଣ୍ଣ ହେବ । ମୁଁ ଏପରି ଏକ ଉପାୟ ଜାଣେ ଯାହାଦ୍ୱାରା କାଲି ରୋଜାଲିଣ୍ଡଙ୍କୁ ଏଠାରେ ରକ୍ତମାଂସ ଶରୀରରେ

ଉପସ୍ଥିତ କରାଇପାରିବ ଓ ସେ ତୁମକୁ ବିବାହ କରିବାକୁ ସ୍ୱୀକୃତ ହେବେ । ମୁଁ ମୋର ଦାଦାଙ୍କଠାରୁ ଏକପ୍ରକାର ଯାଦୁବିଦ୍ୟା ଶିଖିଛି । ତାହାରି ବଳରେ ମୁଁ ଏହା କରାଇପାରିବି ।"

ଅର୍ଲଣ୍ଡୋ ଗାନମିଡ଼ଙ୍କ କଥାକୁ ପୂରା ବିଶ୍ୱାସ କରିପାରିଲେ ନାହିଁ କିମ୍ବା ଏକବାରେ ଅବିଶ୍ୱାସ କରିପାରିଲେ ନାହିଁ । ସେ ପଚାରିଲେ, ତୁମେ ଯାହା କହୁଛ ତାହା କଣ ସତ ?" ଗାନମିଡ଼ ଉତ୍ତର କଲେ, "ନିଶ୍ଚୟ ସତ । ତୁମେ ଯଦି ପ୍ରକୃତରେ ରୋଜାଲିଣ୍ଡକୁ ବିବାହ କରିବାକୁ ଚାହଁ, ତେବେ କାଲି ବିବାହ ପାଇଁ ପୋଷାକପତ୍ର ପିନ୍ଧି ପ୍ରସ୍ତୁତ ହୋଇ ରହ । ଡିଉକ୍ ଓ ତାଙ୍କର ବନ୍ଧୁମାନଙ୍କୁ ବିବାହ ଉତ୍ସବରେ ଯୋଗ ଦେବାକୁ ନିମନ୍ତ୍ରଣ କରି ଆଣ । କେବଳ ରୋଜାଲିଣ୍ଡକୁ ବିବାହ-ବେଦୀକୁ ଆଣିବା ଦାୟିତ୍ୱ ମୋର ।"

ତତ୍ପର ଦିନ ସକାଳେ ଏଲିଆନାଙ୍କ ସମ୍ମତିକ୍ରମେ ଅଲିଭର ଅର୍ଲଣ୍ଡୋଙ୍କ ସହିତ ଡିଉକ୍‌ଙ୍କ ନିକଟରେ ଉପସ୍ଥିତ ହେଲେ ।

ଏକସଙ୍ଗରେ ଦୁଇଟି ଯାକ ବିବାହ ଅନୁଷ୍ଠିତ ହେବାର କଥା । ସମସ୍ତେ ବିବାହ ଉତ୍ସବରେ ଯୋଗଦେବାପାଇଁ ଉପସ୍ଥିତ; କିନ୍ତୁ ଏତେବେଳଯାଏ ରୋଜାଲିଣ୍ଡଙ୍କର ଦେଖାନାହିଁ । ସମସ୍ତେ ମନେ କଲେ ଯେ ଅର୍ଲଣ୍ଡୋକୁ ଅପଦସ୍ଥ କରିବାପାଇଁ ଗାନମିଡ଼ ଗୋଟାଏ ଷଡ଼ଯନ୍ତ୍ର କରିଅଛି ।

ଡିଉକ୍ ଶୁଣିଲେ ଯେ ଆର୍ଲଣ୍ଡୋ ଯାହାକୁ ବିବାହ ହେବା କଥା, ସେ ହେଉଛି ତାଙ୍କର ନିଜ କନ୍ୟା ରୋଜାଲିଣ୍ଡ । ସେ ଅର୍ଲଣ୍ଡୋକୁ ପଚାରିଲେ, "ତୁମେ କଅଣ ପ୍ରକୃତରେ ବିଶ୍ୱାସ କରୁଛ ଏହି ଯୁବକ ଗାନମିଡ଼ ଯାଦୁବିଦ୍ୟାବଳରେ ରୋଜାଲିଣ୍ଡକୁ ଆଣି ଏଠାରେ ଉପସ୍ଥିତ କରାଇବ ?" ଅର୍ଲଣ୍ଡୋ ଉତ୍ତର କଲେ, "ମୁଁ କିଛି ଜାଣିପାରୁନାହିଁ ଏହା ସତ୍ୟ କି ମିଥ୍ୟା ?" ଏହି ସମୟରେ

ଗାନମିଡ଼ ଉପସ୍ଥିତ ହୋଇ ଉଜକ୍‌ଙ୍କୁ ପଚାରିଲେ, "ମୁଁ ଯଦି ଆପଣଙ୍କ କନ୍ୟା ଗ୍ରେଜାଲିଣ୍ଡାକୁ ଆଣିଦିଏ, ତେବେ ଆପଣ ତାକୁ ଏହି ଯୁବକ ଅର୍ଲାଣ୍ଡୋ ସହିତ ବିବାହ ଦେବାକୁ ସ୍ୱୀକୃତ ତ ?" ଉଜକ୍ ଉତ୍ତର କଲେ, "ଆନନ୍ଦରେ ମୁଁ ଏ ବିବାହରେ ସ୍ୱୀକୃତି ଦେବି । ଖାଲି ସେତିକି ନୁହେଁ, ମୁଁ ରାଜା ହୋଇ ରାଜତ୍ୱ କରୁଥିଲେ ମଧ୍ୟ ଏହି ବିବାହରେ କୁଣ୍ଠିତ ହୁଅନ୍ତି ନାହିଁ ।"

କିଛି ସମୟ ପାଇଁ ଗାନମିଡ଼ ଓ ଏଲିଆନା ସେଠାରୁ ଚାଲିଗଲେ । ଗାନମିଡ଼ ପୁରୁଷର ପୋଷାକ ଫିଙ୍ଗିଦେଇ ନାରୀ-ପୋଷାକ ପିନ୍ଧି ମୁହୂର୍ତ୍ତକ ମଧ୍ୟରେ ଗ୍ରେଜାଲିଣ୍ଡାରେ ପରିଣତ ହୋଇଗଲେ । ଏଥିପାଇଁ କୌଣସି ଯାଦୁବିଦ୍ୟାର ଆବଶ୍ୟକ ନ ଥିଲା । ଏଲିଆନା ମଧ୍ୟ ମଫସଲି ବାଳିକାର ପୋଷାକ ଫିଙ୍ଗିଦେଇ ନିଜର ବହୁମୂଲ୍ୟ ପୋଷାକ ପିନ୍ଧି ଉଜକ୍ ଫ୍ରେଡ୍ରେରିକଙ୍କ କନ୍ୟା ସେଲିଆ ରୂପରେ ପରିବର୍ତ୍ତିତ ହୋଇଗଲେ ।

ଏଣେ ଉଜକ୍ ଆର୍ଲାଣ୍ଡୋଙ୍କୁ କହିଲେ, "ଏହି ମେଷପାଳକ ବାଳକ ଗାନମିଡ଼ର ଚେହେରା ଠିକ୍ ମୋ ଝିଅ ଗ୍ରେଜାଲିଣ୍ଡାର ଚେହେରା ପରି ।" ଅର୍ଲାଣ୍ଡୋ ମଧ୍ୟ ଏହି ମତର ସମର୍ଥନ କଲେ ।

ଯାହାହେଉ ସେମାନଙ୍କୁ ବେଶି ସମୟ ସନ୍ଦେହରେ ପଡ଼ିବାକୁ ହେଲା ନାହିଁ । ଗାନମିଡ଼ ଓ ଏଲିଆନା ଯଥାକ୍ରମେ ଗ୍ରେଜାଲିଣ୍ଡ ଓ ସେଲିଆରୂପେ ଦେଖାଦେଇ ସମସ୍ତ ସନ୍ଦେହ ଦୂର କରିଦେଲେ । ଗ୍ରେଜାଲିଣ୍ଡ ଜାନୁପାତପୂର୍ବକ ପିତାଙ୍କର ଆଶୀର୍ବାଦ ଭିକ୍ଷାକଲେ । ଅନେକେ ହୁଏତ ମନେ କରିଥାନ୍ତେ ଯେ ଏସବୁ ଯାଦୁବିଦ୍ୟାର ଫଳ; ମାତ୍ର ଗ୍ରେଜାଲିଣ୍ଡ ପିତୃବ୍ୟଙ୍କଦ୍ୱାରା ରାଜପ୍ରାସାଦରୁ ବିତାଡ଼ିତ ହୋଇ କପର ସେଲିଆଙ୍କ ସହିତ ବନକୁ ଆସି ଗାନମିଡ଼ ନାମରେ

ଓ ସେଲିଆ ଏଲିଆନା ନାମରେ ମେଷପାଳକର କୁଟୀରରେ ବାସକରୁଥିଲେ, ତାହା ବର୍ଣ୍ଣନା କରିଗଲେ ।

ଏକସମୟରେ ଦୁଇଟିଯାକ ବିବାହ ଯଥାବିଧି ସମ୍ପାଦିତ ହେଲା । ଅବଶ୍ୟ ଏ ବନ ମଧ୍ୟରେ ବିବାହର ଆଡ଼ମ୍ବର ନ ଥିଲା; କିନ୍ତୁ ସମସ୍ତେ ଯେ ଏପ୍ରକାର ବିବାହରେ ଆନନ୍ଦିତ ହୋଇଥିଲେ, ଏଥିରେ ସନ୍ଦେହ ନାହିଁ ।

ଡିଉକ୍ ଓ ତାଙ୍କର ବନ୍ଧୁମାନେ ବୃକ୍ଷମୂଳରେ ବସି ବିବାହ-ଭୋଜ ଖାଉଅଛନ୍ତି, ଏହି ସମୟରେ ଏକ ଶୁଭ ସମ୍ବାଦ ଆସି ପହଞ୍ଚିଲା—ଡିଉକ୍ ତାଙ୍କର ରାଜ୍ୟ ଫେରିପାଇଅଛନ୍ତି ।

ଅତ୍ୟାଚାରୀ ଡିଉକ୍ ଫ୍ରେଡ଼େରିକ୍ ଦେଖିଲେ ଯେ ପ୍ରକୃତ ଡିଉକ୍‌ଙ୍କୁ ନିର୍ବାସିତ କରିଥିବାରୁ ଲୋକେ ତାଙ୍କର ନିନ୍ଦା କରୁଅଛନ୍ତି; ତାଙ୍କର ନିଜ କନ୍ୟା ସେଲିଆ ତାଙ୍କୁ ତ୍ୟାଗକରି ଚାଲିଯାଇଅଛି ଏବଂ ରାଜ୍ୟର ଶତ ଶତ ସମ୍ଭ୍ରାନ୍ତ ପ୍ରଜା ରାଜ୍ୟ ଛାଡ଼ି ବନବାସୀ ଡିଉକ୍‌ଙ୍କର ଅନୁଗତ ହେଉଅଛନ୍ତି । ଦୁଃଖକଷ୍ଟରେ ରହି ମଧ୍ୟ ନିର୍ବାସିତ ଡିଉକ୍ ଯେଉଁ ଶ୍ରଦ୍ଧା ଓ ଭକ୍ତି ଲାଭ କରୁଅଛନ୍ତି, ତାହାର ଶତାଂଶ ସୁଦ୍ଧା ତାଙ୍କୁ ମିଳୁନାହିଁ । ତେଣୁ ସେ କ୍ରୋଧାନ୍ଧ ହୋଇ ଦଳେ ସୈନ୍ୟ ଘେନି ଡିଉକ୍ ଓ ତାଙ୍କର ଅନୁଚରବର୍ଗଙ୍କୁ ହତ୍ୟା କରିବାକୁ ଆସୁଥିଲେ; ମାତ୍ର ଦୈବକ୍ରମେ ତାଙ୍କର ସମସ୍ତ କଳ୍ପନା ବ୍ୟର୍ଥ ହୋଇଗଲା । ବନର ଉପକଣ୍ଠରେ ତାଙ୍କର ଜଣେ ସନ୍ନ୍ୟାସୀଙ୍କ ସହିତ ସାକ୍ଷାତ ହେଲା । ଏହି ସନ୍ନ୍ୟାସୀଙ୍କ ଉପଦେଶ ଫଳରେ ତାଙ୍କର ମନୋଭାବ ସମ୍ପୂର୍ଣ୍ଣରୂପେ ବଦଳିଗଲା । ସେ ଅନୁତାପ ପ୍ରକାଶ କରି ଅନ୍ୟାୟଲବ୍‌ଧ ରାଜ୍ୟ ତ୍ୟାଗପୂର୍ବକ ଅବଶିଷ୍ଟ ଜୀବନ କୌଣସି ଧର୍ମମନ୍ଦିରରେ ଯାପନ କରିବେ ବୋଲି ସ୍ଥିର କଲେ । ପ୍ରଥମେ ସେ ଜଣେ ଦୂତ ପଠାଇ ଡିଉକ୍‌ଙ୍କୁ ଜଣାଇଦେଲେ ଯେ

ଏଣିକି ସେ ପୁନର୍ବାର ତାଙ୍କର ରାଜ୍ୟ-ଶାସନଭାର ନଅନ୍ତୁ । ତାଙ୍କର ବନ୍ଧୁମାନଙ୍କର ଯେଉଁ ସମ୍ପତ୍ତି ଅନ୍ୟାୟରେ ନଆଯାଇଅଛି, ତାହା ସେମାନଙ୍କୁ ଫେରାଇ ଦିଆଯାଉ ।

ଏହି ସମ୍ବାଦରେ ସମବେତ ଭଦ୍ରବ୍ୟକ୍ତିମାନଙ୍କ ମଧ୍ୟରେ ଆନନ୍ଦର ଲହରୀ ଖେଳିଗଲା । ସେଲିଆ ଆନନ୍ଦରେ ରୋଜାଲିଣ୍ଡଙ୍କୁ ଆଲିଙ୍ଗନ କରି କହିଲେ "ଭଉଣୀ, ତୁ ଏବେ ରାଜ୍ୟର ଉତ୍ତରାଧିକାରିଣୀ । ଏଥିରେ ମୁଁ ବିଶେଷ ଆନନ୍ଦିତ । ତୁ ତୋର ନ୍ୟାଯ୍ୟ ଦାବୀ ଫେରିପାଇଅଛୁ । ମୋ ପ୍ରତି ତୋର ସ୍ନେହ ଏହିପରି ରହିଥାଉ ।"

ଯେଉଁ ବନ୍ଧୁମାନେ ଡିଉକଙ୍କ ବିପଦରେ ତାଙ୍କ ପାଖେ ପାଖେ ରହିଥିଲେ, ସେମାନେ ଏବେ ଉପଯୁକ୍ତ ପୁରସ୍କାର ପାଇଲେ । ଡିଉକ୍ ସେମାନଙ୍କୁ ନେଇ ନିଜ ରାଜ୍ୟକୁ ଫେରିଗଲେ । ଅର୍ଲାଣ୍ଡୋ ଓ ରୋଜାଲିଣ୍ଡ ଏବଂ ଅଲିଭର ଓ ସେଲିଆ ଏହି ଦମ୍ପତିଦ୍ୱୟ ସୁଖ-ଶାନ୍ତିରେ କାଳ କଟାଇବାକୁ ଲାଗିଲେ ।

ରାଜ୍ୟରେ ପୁଣି ସୁଖଶାନ୍ତିର ପ୍ରତିଷ୍ଠା ହେଲା ।

---

# ସିମ୍ବେଲିନ୍

ଅଗଷ୍ଟସ୍ ସିଜର ରୋମ୍‌ର ସମ୍ରାଟ୍ ଥିଲାବେଳେ ଇଂଲଣ୍ଡରେ ସିମ୍ବେଲିନ୍ ନାମରେ ଜଣେ ରାଜା ରାଜତ୍ୱ କରୁଥିଲେ । ସେତେବେଳେ ଇଂଲଣ୍ଡକୁ ବ୍ରିଟେନ୍ କୁହାଯାଉଥିଲା ଓ ସେ ଦେଶବାସୀମାନେ ବ୍ରିଟନ ନାମରେ ପରିଚିତ ଥିଲେ ।

ସିମ୍ବେଲିନ୍‌ଙ୍କ ପ୍ରଥମା ରାଣୀଙ୍କ ଗର୍ଭରୁ ଦୁଇଟି ପୁତ୍ର ଓ ଗୋଟିଏ କନ୍ୟା ଜନ୍ମିଥିଲେ । ପୁତ୍ର ଦୁଇଟିର ନାମ ଥିଲା ଇଗୁଡେରିଅସ୍ ଓ ଆର୍ଭିରେଗସ୍; କନ୍ୟାଟିର ନାମ ଥିଲା ଇମୋଜେନ । ଏହି ସନ୍ତାନ ତିନୋଟି ଅତି ଅଳ୍ପବୟସ୍କ ଥିଲାବେଳେ ରାଣୀଙ୍କର ମୃତ୍ୟୁ ଘଟିଲା । କେହି ଜଣେ ରାଜାଙ୍କର ପୁତ୍ର ସନ୍ତାନ ଦୁଇଟିକୁ ଅପହରଣ କରିନେଲା; କେବଳ ଇମୋଜେନ ରାଜାଙ୍କ ପ୍ରାସାଦରେ ବଢ଼ିବାକୁ ଲାଗିଲେ ।

ରାଜା ସିମ୍ବେଲିନ୍ ଦ୍ୱିତୀୟା ପତ୍ନୀ ଗ୍ରହଣ କଲେ । ଯାହାଙ୍କୁ ସେ ଦ୍ୱିତୀୟା ରାଣୀରୂପେ ଆଣିଲେ, ସେ ମଧ୍ୟ ଏଥିପୂର୍ବରୁ ଅନ୍ୟ ଜଣକୁ ବିବାହ କରିଥିଲେ । ସେହି ବିବାହ ଫଳରେ ତାଙ୍କର କ୍ଲୋଟେନ ନାମକ ଏକ ପୁତ୍ର ଜନ୍ମିଥିଲା ।

ନୂତନ ରାଣୀଙ୍କର ସ୍ୱଭାବ ଭଲ ନଥିଲା । ସେ ନାନାପ୍ରକାର ଷଡ଼ଯନ୍ତ୍ରରେ ଲିପ୍ତ ରହୁଥିଲେ ଓ ସିମ୍ବେଲିନ୍‌ଙ୍କ ପ୍ରଥମାପତ୍ନୀଗର୍ଭଜାତ କନ୍ୟା ଇମୋଜେନ ପ୍ରତି ନିତାନ୍ତ ନିର୍ଦ୍ଦୟ ବ୍ୟବହାର କରୁଥିଲେ ।

ରାଣୀ ଇମୋଜେନଙ୍କୁ ଭଲ ପାଉ ନ ଥିଲେ ସତ, ମାତ୍ର ସେ ଜାଣିଥିଲେ ଯେ ସିମ୍ବେଲିନଙ୍କ ଅନ୍ତେ ଏହି ଇମୋଜେନ ହିଁ ରାଜ୍ୟର ଉତ୍ତରାଧିକାରିଣୀ ହେବ । ରାଜାଙ୍କର ପୁତ୍ରଦ୍ୱୟଙ୍କର ତ କିଛି ସମ୍ବାଦ ନାହିଁ । ତେଣୁ କୌଣସିମତେ କ୍ଲୋଟେନ୍ ସହିତ ଇମୋଜେନର ବିବାହ କରାଇପାରିଲେ ନିଜର ପୁତ୍ର ବୃଟେନର ରାଜପଦରେ ଅଧିଷ୍ଠିତ ହୋଇପାରିବ । କିନ୍ତୁ ରାଣୀଙ୍କର ଏହି ଅଭିପ୍ରାୟ ସଫଳ ହୋଇପାରିଲା ନାହିଁ । ଇମୋଜେନ ରାଜା ବା ରାଣୀଙ୍କୁ କିଛି ନ ଜଣାଇ ଗୋପନରେ ପୋଷ୍ଟୁମସ୍ ନାମକ ଜଣେ ଯୁବକକୁ ବିବାହ କଲେ ।

ପୋଷ୍ଟୁମସ୍ ରାଜକୁଳରେ, ଏପରି କି କୌଣସି ସମ୍ଭ୍ରାନ୍ତ ପରିବାରରେ ସୁଦ୍ଧା, ଜନ୍ମଗ୍ରହଣ କରି ନ ଥିଲେ; କିନ୍ତୁ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ତାଙ୍କଭଳି ବିବିଧ ଗୁଣସମ୍ପନ୍ନ ଯୁବକ ବାସ୍ତବରେ ବିରଳ ଥିବେ । ବୀରତ୍ୱ ପ୍ରଦର୍ଶନରେ ମଧ୍ୟ ଅଳ୍ପ ଲୋକ ତାଙ୍କର ସମକକ୍ଷ ଥିଲେ । ତାଙ୍କର ପିତା ରାଜା ସିମ୍ବେଲିନଙ୍କ ପାଇଁ ଯୁଦ୍ଧ କରୁ କରୁ ପ୍ରାଣ ହରାଇଥିଲେ । ପୋଷ୍ଟୁମସ୍‌ଙ୍କ ଜନ୍ମ ପରେ ତାଙ୍କ ମାତା ମଧ୍ୟ ମୃତ୍ୟୁମୁଖରେ ପଡ଼ିଥିଲେ ।

ସିମ୍ବେଲିନ୍ ପିତୃମାତୃହୀନ ପୋଷ୍ଟୁମସ୍‌ଙ୍କୁ ରାଜପ୍ରାସାଦକୁ ଆଣି ଇମୋଜେନ ସହିତ ଲାଳନପାଳନ କରାଇଥିଲେ ଓ ଦୁହେଁ ଏକତ୍ର ଶିକ୍ଷା ଲାଭ କରିଥିଲେ । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ଦୁହିଁଙ୍କ ମଧ୍ୟରେ ପରସ୍ପର ପ୍ରତି ଆସକ୍ତି ବୃଦ୍ଧି ପାଇଲା ଓ ପରିଶେଷରେ ଦୁହେଁ ଗୋପନରେ ବିବାହ-ବନ୍ଧନରେ ଆବଦ୍ଧ ହୋଇଥିଲେ ।

ହିଂସାପ୍ରିୟା ରାଣୀ ନିଜର ଗୁପ୍ତଚରମାନଙ୍କଠାରୁ ଶୁଣିପାରିଲେ ଯେ ଇମୋଜେନ ଓ ପୋଷ୍ଟୁମସ୍ ବିବାହ କରିସାରିଛନ୍ତି । ତେଣୁ ନିଜର ପୁତ୍ରକୁ ସିଂହାସନରେ ବସାଇବାର ଆଶା ଲୋପ ପାଇଗଲା ।

ରାଣୀ ଏ ଦୁହିଙ୍କର ଅନିଷ୍ଟ ସାଧନ ଉଦ୍ଦେଶ୍ୟରେ ଏହି ଗୋପନ ବିବାହ କଥା ରାଜାଙ୍କୁ ଜଣାଇଦେଲେ ।

ଇମୋଜେନ ରାଜକୁଳର ଗୌରବକୁ ତଳେ ପକାଇଦେଇ ଜଣେ ସାଧାରଣ ପ୍ରଜାକୁ ପତିରୂପେ ଗ୍ରହଣ କରିଥିବା ସମ୍ବାଦରେ ରାଜା ସିମ୍ବେଲିନ୍ ଅତ୍ୟନ୍ତ କ୍ରୁଦ୍ଧ ହୋଇଉଠିଲେ । ସେ ପୋଷ୍ଟୁମସଙ୍କ ପ୍ରତି ନିର୍ବାସନ ଦଣ୍ଡ ଆଦେଶ ଦେଲେ ଓ ଘୋଷଣା କରାଇଲେ ଯଦି କେବେ ପୋଷ୍ଟୁମସ୍‌କୁ ବ୍ରିଟେନରେ ଦେଖିବାକୁ ମିଳେ ତାର ପ୍ରାଣଦଣ୍ଡ ହେବ ।

ସ୍ୱାମୀଙ୍କ ନିର୍ବାସନରେ ଇମୋଜେନର ଦୁଃଖ ଦେଖି ରାଣୀ ସହାନୁଭୂତି ପ୍ରକାଶ କରି କହିଲେ, "ପୋଷ୍ଟୁମସ ବ୍ରିଟେନ ତ୍ୟାଗ କରିଯିବା ପୂର୍ବରୁ ମୁଁ ତୁମ ଦୁହିଙ୍କର ମିଳନର ବ୍ୟବସ୍ଥା କରାଇ-ଦେବି । ଏଥିରେ ରାଣୀଙ୍କର ଏକ ଦୁରଭିସନ୍ଧି ରହିଥିଲା । ସେ ଆଶା କରିଥିଲେ ଯେ ଏହାଦ୍ୱାରା ଇମୋଜେନ ତାଙ୍କୁ ହିତକାରିଣୀ ବୋଲି ମନେକରିବ । କିଛି ଦିନ ପରେ ସେ ଇମୋଜେନଙ୍କୁ ବୁଝାଇଦେବେ ଯେ ପୋଷ୍ଟୁମସ୍ ସହିତ ତାଙ୍କର ବିବାହ ଆଇନ-ସଙ୍ଗତ ନୁହେଁ । ତେଣୁ ସେ କ୍ଲୋଟେନକୁ ବିବାହ କରି ସୁଖରେ ରହିପାରିବ ।

ପୋଷ୍ଟୁମସ୍ ରୋମ୍‌ରେ ନିର୍ବାସିତ ଜୀବନ ଯାପନ କରିବାକୁ ସ୍ଥିର କରିଥିଲେ । ବ୍ରିଟେନ୍‌ରୁ ଚିରବିଦାୟ ନେବା ପୂର୍ବରୁ ଇମୋଜେନଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଦୁହିଙ୍କର ଚିର ବିଚ୍ଛେଦ ହେଉଥିଲେହେଁ ଦୁହେଁ ପରସ୍ପରର ସ୍ମୃତି ବହନ କରି ଆଜୀବନ ପ୍ରେମର ମହତ୍ତ୍ୱ ରଖିବେ ବୋଲି ପ୍ରତିଜ୍ଞାବଦ୍ଧ ହେଲେ । ଇମୋଜେନଙ୍କର ମାତା ମୃତ୍ୟୁପୂର୍ବରୁ ତାଙ୍କୁ ଗୋଟିଏ ହୀରକ ଅଙ୍ଗୁରୀୟ ଦେଇଯାଇଥିଲେ । ଇମୋଜେନ ସେହି ମୁଦ୍ରିକାଟି

ରାଣୀ ଏ ଦୁହିଁଙ୍କର ଅନିଷ୍ଟ ସାଧନ ଉଦ୍ଦେଶ୍ୟରେ ଏହି ଗୋପନ ବିବାହ କଥା ରାଜାଙ୍କୁ ଜଣାଇଦେଲେ ।

ଇମୋଜେନ ରାଜକୁଳର ଗୌରବକୁ ତଳେ ପକାଇଦେଇ ଜଣେ ସାଧାରଣ ପ୍ରଜାକୁ ପତିରୂପେ ଗ୍ରହଣ କରିଥିବା ସମ୍ବାଦରେ ରାଜା ସିମ୍ବେଲିନ୍ ଅତ୍ୟନ୍ତ କ୍ରୁଦ୍ଧ ହୋଇଉଠିଲେ । ସେ ପୋଷ୍ଟୁମସଙ୍କ ପ୍ରତି ନିର୍ବାସନ ଦଣ୍ଡ ଆଦେଶ ଦେଲେ ଓ ଘୋଷଣା କରାଇଲେ ଯଦି କେବେ ପୋଷ୍ଟୁମସ୍‌କୁ ବ୍ରିଟେନରେ ଦେଖିବାକୁ ମିଳେ ତାର ପ୍ରାଣଦଣ୍ଡ ହେବ ।

ସ୍ୱାମୀଙ୍କ ନିର୍ବାସନରେ ଇମୋଜେନର ଦୁଃଖ ଦେଖି ରାଣୀ ସହାନୁଭୂତି ପ୍ରକାଶ କରି କହିଲେ, "ପୋଷ୍ଟୁମସ ବ୍ରିଟେନ ତ୍ୟାଗ କରିଯିବା ପୂର୍ବରୁ ମୁଁ ତୁମ ଦୁହିଁଙ୍କର ମିଳନର ବ୍ୟବସ୍ଥା କରାଇ-ଦେବି । ଏଥିରେ ରାଣୀଙ୍କର ଏକ ଦୁରଭିସନ୍ଧି ରହିଥିଲା । ସେ ଆଶା କରିଥିଲେ ଯେ ଏହାଦ୍ୱାରା ଇମୋଜେନ ତାଙ୍କୁ ହିତକାରିଣୀ ବୋଲି ମନେକରିବ । କିଛି ଦିନ ପରେ ସେ ଇମୋଜେନଙ୍କୁ ବୁଝାଇଦେବେ ଯେ ପୋଷ୍ଟୁମସ୍ ସହିତ ତାଙ୍କର ବିବାହ ଆଇନ-ସଙ୍ଗତ ନୁହେଁ । ତେଣୁ ସେ କ୍ଲୋଟେନକୁ ବିବାହ କରି ସୁଖରେ ରହିପାରିବ ।

ପୋଷ୍ଟୁମସ୍ ରୋମ୍‌ରେ ନିର୍ବାସିତ ଜୀବନ ଯାପନ କରିବାକୁ ସ୍ଥିର କରିଥିଲେ । ବ୍ରିଟେନ୍‌ରୁ ଚିରବିଦାୟ ନେବା ପୂର୍ବରୁ ଇମୋଜେନଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଦୁହିଁଙ୍କର ଚିର ବିଚ୍ଛେଦ ହେଉଥିଲେହେଁ ଦୁହେଁ ପରସ୍ପରର ସ୍ମୃତି ବହନ କରି ଆଜୀବନ ପ୍ରେମର ମହତ୍ତ୍ୱ ରଖିବେ ବୋଲି ପ୍ରତିଜ୍ଞାବଦ୍ଧ ହେଲେ । ଇମୋଜେନଙ୍କର ମାତା ମୃତ୍ୟୁପୂର୍ବରୁ ତାଙ୍କୁ ଗୋଟିଏ ହୀରକ ଅଙ୍ଗୁରୀୟ ଦେଇଯାଇଥିଲେ । ଇମୋଜେନ ସେହି ମୁଦ୍ରିକାଟି

ପୋଷ୍ଟୁମସ୍‌ଙ୍କୁ ଦେଇ କହିଲେ, "ମୋର ପ୍ରେମର ଏହି ସଙ୍କେତଟିକୁ ପାଖେ ପାଖେ ରଖିଥିବ ।" ପୋଷ୍ଟୁମସ୍ ମଧ୍ୟ ପ୍ରତିଜ୍ଞା କଲେ ଯେ ସେ ମୁଦ୍ରିକାକୁ ଆଜୀବନ ଧାରଣ କରିବେ ଓ ପ୍ରାଣାନ୍ତେ ମଧ୍ୟ ଏହାକୁ ହସ୍ତାନ୍ତର କରିବେ ନାହିଁ । ପୋଷ୍ଟୁମସ ସେହିପରି ଗୋଟିଏ କଙ୍କଣ ଇମୋଜେନଙ୍କ ହାତରେ ପିନ୍ଧାଇଦେଇ କହିଲେ, "ମୋର ଏହି ପ୍ରେମର ସଙ୍କେତଟିକୁ ହସ୍ତରେ ଧାରଣ କରି ମୋତେ ସ୍ମରଣରେ ରଖିଥିବ ।"

ଦୁହେଁ ଏହିପରି ପ୍ରତିଜ୍ଞାବଦ୍ଧ ହୋଇ ପରସ୍ପରଠାରୁ ବିଦାୟ ନେଲେ । ଦୁହିଙ୍କର ଚକ୍ଷୁରୁ ଲୋତକଧାରା ବହିଗଲା ।

ପୋଷ୍ଟୁମସ୍ ରୋମରେ ନିରାପଦରେ ଉପସ୍ଥିତ ହେଲେ । ଏଣେ ଇମୋଜେନ ପିତାଙ୍କ ରାଜପ୍ରାସାଦରେ ରହି ତାଙ୍କର ବିଷାଦମୟ ଦିନ କଟାଇବାକୁ ଲାଗିଲେ ।

ରୋମରେ ପହଞ୍ଚି ପୋଷ୍ଟୁମସ୍ କେତେକ ରୋମୀୟ ଯୁବକଙ୍କର ସଙ୍ଗୀ ହେଲେ । ସେମାନଙ୍କ ମଧ୍ୟରେ ରମଣୀମାନଙ୍କର ସ୍ୱଭାବ ବିଷୟରେ ଆଲୋଚନା ହେଉଥିଲା । ରୋମୀୟ ଯୁବକମାନେ କହୁଥିଲେ ଯେ ରୋମ୍‌ର ରମଣୀମାନେ ସାଧ୍ୱୀ ଓ ପତିବ୍ରତା । ସେମାନେ ଥରେ ଯାହାକୁ ପତିରୂପେ ଗ୍ରହଣ କରନ୍ତି, ଆଜୀବନ ତାହାର ଅନୁଗତା ହୋଇ ରହିଥାନ୍ତି । ପୋଷ୍ଟୁମସ୍ କହୁଥିଲେ— ବ୍ରିଟେନର ରମଣୀମାନଙ୍କର ପାତିବ୍ରତ୍ୟ ଅତୁଳନୀୟ । ତାଙ୍କର ପତ୍ନୀ ଇମୋଜେନଙ୍କ ଭଳି ପତିବ୍ରତା, ବୁଦ୍ଧିମତୀ ଓ ସାଧ୍ୱୀ ରମଣୀ ପୃଥିବୀରେ ନ ଥିବେ ।

ବ୍ରିଟେନର ଜଣେ ରମଣୀର ଏପରି ପ୍ରଶଂସା ଜଣେ ରୋମୀୟ ଯୁବକକୁ ଅସହ୍ୟ ବୋଧ ହେଲା । ତାର ବିଶ୍ୱାସ ଥିଲା ଯେ ରୋମର ରମଣୀମାନେ ପାତିବ୍ରତ୍ୟ ଗୁଣରେ ବ୍ରିଟେନର ରମଣୀମାନଙ୍କଠାରୁ

ପୋଷ୍ଟୁମସ୍‌ଙ୍କୁ ଦେଇ କହିଲେ, "ମୋର ପ୍ରେମର ଏହି ସଙ୍କେତଟିକୁ ପାଖେ ପାଖେ ରଖିଥିବ ।" ପୋଷ୍ଟୁମସ୍ ମଧ୍ୟ ପ୍ରତିଜ୍ଞା କଲେ ଯେ ସେ ମୁଦ୍ରିକାକୁ ଆଜୀବନ ଧାରଣ କରିବେ ଓ ପ୍ରାଣାନ୍ତେ ମଧ୍ୟ ଏହାକୁ ହସ୍ତାନ୍ତର କରିବେ ନାହିଁ । ପୋଷ୍ଟୁମସ ସେହିପରି ଗୋଟିଏ କଙ୍କଣ ଇମୋଜନଙ୍କ ହାତରେ ପିନ୍ଧାଇଦେଇ କହିଲେ, "ମୋର ଏହି ପ୍ରେମର ସଙ୍କେତଟିକୁ ହସ୍ତରେ ଧାରଣ କରି ମୋତେ ସ୍ମରଣରେ ରଖିଥିବ ।"

ଦୁହେଁ ଏହିପରି ପ୍ରତିଜ୍ଞାବଦ୍ଧ ହୋଇ ପରସ୍ପରଠାରୁ ବିଦାୟ ନେଲେ । ଦୁହିଙ୍କର ଚକ୍ଷୁରୁ ଲୋତକଧାରା ବହିଗଲା ।

ପୋଷ୍ଟୁମସ୍ ରୋମରେ ନିର୍ବାସିତ ହୋଇ ଉପସ୍ଥିତ ହେଲେ । ଏଣେ ଇମୋଜନ ପିତାଙ୍କ ରାଜପ୍ରାସାଦରେ ରହି ତାଙ୍କର ବିଷାଦମୟ ଦିନ କଟାଇବାକୁ ଲାଗିଲେ ।

ରୋମରେ ପହଞ୍ଚି ପୋଷ୍ଟୁମସ୍ କେତେକ ରୋମୀୟ ଯୁବକଙ୍କର ସଙ୍ଗୀ ହେଲେ । ସେମାନଙ୍କ ମଧ୍ୟରେ ରମଣୀମାନଙ୍କର ସ୍ୱଭାବ ବିଷୟରେ ଆଲୋଚନା ହେଉଥିଲା । ରୋମୀୟ ଯୁବକମାନେ କହୁଥିଲେ ଯେ ରୋମ୍‌ର ରମଣୀମାନେ ସାଧ୍ୱୀ ଓ ପତିବ୍ରତା । ସେମାନେ ଥରେ ଯାହାକୁ ପତିରୂପେ ଗ୍ରହଣ କରନ୍ତି, ଆଜୀବନ ତାହାର ଅନୁଗତା ହୋଇ ରହିଥାନ୍ତି । ପୋଷ୍ଟୁମସ୍ କହୁଥିଲେ—ବ୍ରିଟେନର ରମଣୀମାନଙ୍କର ପାତିବ୍ରତ୍ୟ ଅତୁଳନୀୟ । ତାଙ୍କର ପତ୍ନୀ ଇମୋଜନଙ୍କ ଭଳି ପତିବ୍ରତା, ବୁଦ୍ଧିମତୀ ଓ ସାଧ୍ୱୀ ରମଣୀ ପୃଥିବୀରେ ନ ଥିବେ ।

ବ୍ରିଟେନର ଜଣେ ରମଣୀର ଏପରି ପ୍ରଶଂସା ଜଣେ ରୋମୀୟ ଯୁବକକୁ ଅସହ୍ୟ ବୋଧ ହେଲା । ତାର ବିଶ୍ୱାସ ଥିଲା ଯେ ରୋମର ରମଣୀମାନେ ପାତିବ୍ରତ୍ୟ ଗୁଣରେ ବ୍ରିଟେନର ରମଣୀମାନଙ୍କଠାରୁ

ବହୁଗୁଣ ଉଚ୍ଚତରେ । ଏହି ଯୁବକର ନାମ ଇଆସିମୋ । ଇଆସିମୋ ଓ ପୋଷ୍ଟୁମସଙ୍କ ମଧ୍ୟରେ ଏହି ବାଦାନୁବାଦ ବହୁଦୂର ଅଗ୍ରସର ହେଲା । ଶେଷରେ ପୋଷ୍ଟୁମସ୍ ବାଜି ରଖି କହିଲେ, "ମୁଁ ପ୍ରତିଜ୍ଞା କରି କହିପାରେ, ମୋର ସ୍ତ୍ରୀର ପାତିବ୍ରତ୍ୟର ତୁଳନା ନାହିଁ । ଇଆସିମୋ, ତୁମେ ଯଦି ବ୍ରିଟେନକୁ ଯାଇ ମୋ ବିବାହିତା ପତ୍ନୀ ଇମୋଜନଙ୍କର ପ୍ରେମ ଲାଭ କରିପାର ଓ ମୁଁ ତାଙ୍କୁ ଦେଇଥିବା ପ୍ରେମର ସନ୍ତକ କଙ୍କଣଟି ତାଙ୍କଠାରୁ ଆଣିପାର, ତେବେ ମୁଁ ମୋର ଏହି ସ୍ମାରକ ଅଙ୍ଗୁରୀୟକଟି ତୁମକୁ ଦେବି । ତୁମେ ଯଦି ଏଥିରେ କୃତକାର୍ଯ୍ୟ ନ ହୋଇ ଫେରିଆସ ତେବେ ତୁମକୁ ଏକଲକ୍ଷ ଟଙ୍କା ଦେବାକୁ ହେବ । ଇଆସିମୋ ଏହି ପ୍ରସ୍ତାବରେ ସ୍ୱୀକୃତ ହୋଇ ବ୍ରିଟେନ ଅଭିମୁଖରେ ବାହାରିଲେ । ଇମୋଜନଙ୍କ ସଚ୍ଚରିତ୍ର ଓ ପାତିବ୍ରତ୍ୟ ଉପରେ ପୋଷ୍ଟୁମସ୍ ଏପରି ଦୃଢ଼ ବିଶ୍ୱାସ ରଖିଥିଲେ ଯେ ଇଆସିମୋ କଦାପି ସଫଳ ହୋଇପାରିବ ନାହିଁ ବୋଲି ସେ ଭାବିଥିଲେ ।

ଇଆସିମୋ ବ୍ରିଟେନରେ ପହଞ୍ଚି ନିଜକୁ ପୋଷ୍ଟୁମସଙ୍କର ଜଣେ ବନ୍ଧୁ ବୋଲି ପରିଚୟ ଦେବାରୁ ଇମୋଜନ ଆଦରରେ ତାଙ୍କୁ ସମ୍ବର୍ଦ୍ଧନା ଜଣାଇଲେ । କିନ୍ତୁ ଯେତେବେଳେ ଇଆସିମୋ ତାଙ୍କ ପ୍ରତି ପ୍ରେମ ନିବେଦନ କରିବାକୁ ଲାଗିଲେ, ସେତେବେଳେ ଇମୋଜନ ତାଙ୍କୁ ଘୃଣାସହକାରେ ପ୍ରତ୍ୟାଖ୍ୟାନ କରିଦେଲେ । ଇଆସିମୋ ଦେଖିଲେ ଇମୋଜନଙ୍କର ପ୍ରେମ ଲାଭ କରିବା ସମ୍ଭବ ନୁହେଁ ।

ତହୁଁ ସେ କୂଟକପଟର ଆଶ୍ରୟ ନେବାକୁ ବସିଲେ । ସେ ଅର୍ଥ-ଦ୍ୱାରା ଇମୋଜନଙ୍କର କେତେକ ଦାସଦାସୀଙ୍କୁ ନିଜର ବଶ କରିନେଲେ । ସେମାନେ ଇଆସିମୋଙ୍କ ଉପଦେଶ ଅନୁସାରେ ଦିନେ ରାତିରେ ତାଙ୍କୁ ଗୋଟିଏ ବାକ୍ସ ମଧ୍ୟରେ ପୂରାଇ ଇମୋଜନଙ୍କ

ଶୟନ ଗୃହକୁ ନେଇଗଲେ । ଇମୋଜନ ଗଭୀର ନିଦ୍ରାରେ ଶୋଇଥିଲାବେଳେ ଇଆସିମୋ ବାକ୍ସରୁ ବାହାରି ଶୟନଗୃହର ପ୍ରତ୍ୟେକ ପଦାର୍ଥକୁ ମନୋଯୋଗ ସହକାରେ ଦେଖି ସେସବୁର ବିବରଣ ଲିପିବଦ୍ଧ କଲେ । ତତ୍ପରେ ସେ ଇମୋଜନଙ୍କ ଶରୀରକୁ ନିରୀକ୍ଷଣ କରି ଦେଖିଲେ ଯେ ତାଙ୍କର ଗଳଦେଶରେ ଗୋଟିଏ ତିଳଚିହ୍ନ ଅଛି । ତଦନନ୍ତର ସେ ଅତି ସାବଧାନରେ ଇମୋଜନଙ୍କ ବାହୁରୁ କଙ୍କଣଟି ବାହାର କରି ଆଣିଲେ । ଏହିସବୁ ବିବରଣ ଓ କଙ୍କଣ ହସ୍ତଗତ କରିସାରି ସେ ନିଃଶବ୍ଦରେ ପୁଣି ବାକ୍ସ ମଧ୍ୟରେ ପ୍ରବେଶ କଲେ । ପରଦିନ ଭୃତ୍ୟମାନେ ପୂର୍ବ ପରାମର୍ଶ ଅନୁସାରେ ବାକ୍ସଟିକୁ ଶୟନ ଗୃହରୁ ବାହାରକୁ ନେଇଗଲେ । ଇଆସିମୋ ଆଉ କାଳ ବିଳମ୍ବ ନକରି ରୋମକୁ ଫେରିଗଲେ । ସେଠାରେ ସେ ଗର୍ବସହକାରେ ପୋଷ୍ଟୁମସଙ୍କୁ କହିଲେ, "ଦେଖ, ମୁଁ ଇମୋଜନଙ୍କ ସହିତ ଗୋଟିଏ ରାତ୍ରି ଅତିବାହିତ କରି ଆସିଅଛି ।"

ପ୍ରଥମେ ପୋଷ୍ଟୁମସ୍ ନିଜ କାନକୁ ବିଶ୍ୱାସ କରିପାରିଲେ ନାହିଁ । କିନ୍ତୁ ଇଆସିମୋ ଇମୋଜନଙ୍କ ଶୟନଗୃହର ଏକ ବର୍ଣ୍ଣନା ଦେଇ କହିଲେ, ତାଙ୍କ ଶୋଇବା ଘରେ ନାନାବର୍ଣ୍ଣର ରେଶମ କନାର ପରଦା ପଡ଼ିଛି । ତା ଉପରେ ଆଣ୍ଟୋନି ଓ କ୍ଲିଓପେଟ୍ରାଙ୍କ ପ୍ରଥମ ସାକ୍ଷାତର ଦୃଶ୍ୟ ଚିତ୍ରିତ ହୋଇଅଛି ।"ପୋଷ୍ଟୁମସ୍ କହିଲେ,"ତୁ ଏତ ଜଣେ ଲୋକ ଏସବୁ ଶୁଣିଥାଇପାରେ ।" ତହୁଁ ଇଆସିମୋ କହିଲେ, "ଘରର ଧୂଆଁ ନଳୀଟି ଦକ୍ଷିଣ ଦିଗକୁ ଅଛି । ଧୂଆଁ ନଳୀଟି ଡାଏନା ଦେବୀଙ୍କ ମୂର୍ତ୍ତିର ଆକାର ପରି ।"ପୋଷ୍ଟୁମସ୍ କହିଲେ "ବ୍ରିଟେନରେ ସମସ୍ତେ ଏ କଥା ଜାଣନ୍ତି । ଏହା ମଧ୍ୟ ତୁମେ କୌଣସିଠାରୁ ଶୁଣି ଥାଇପାର ।" ତତ୍ପରେ ଇଆସିମୋ ଘରର ସାଜସଜ୍ଜା ବର୍ଣ୍ଣନା କରି

କହିଲେ, "ସେ ଘରଭିତରେ ରୁପାର ଦିଓଟି କନ୍ଦର୍ପଙ୍କ ମୂର୍ତ୍ତି ଅଛି । ମୂର୍ତ୍ତି ଦୁଇଟି ଗୋଟିଏ ଲେଖାଏଁ ଗୋଡ଼ରେ ଛିଡ଼ା ହୋଇଛନ୍ତି ।" ଏବେ ପୋଷ୍ଟମସ୍‌ଙ୍କ ମନରେ ଟିକିଏ ସନ୍ଦେହ ହେଲା । ଲୋକଟା ଘରର ଏତେ ଅନ୍ଧିସନ୍ଧି କଥା ଜାଣିଲା କପରି ? ଶେଷରେ ସେ କଙ୍କଣଟି ବାହାର କରି କହିଲେ, "ଏହି କଙ୍କଣଟିକୁ ଭଲକରି ଦେଖ । ଏଇଟି ଇମୋଜିନଙ୍କର କି ନା ? ସେ ମୋପ୍ରତି ପ୍ରେମ ପ୍ରକାଶ କରି ହାତରୁ ଏଇଟି କାଢ଼ି ମୋତେ ଉପହାର ଦେଇଅଛନ୍ତି । ଦେଲାବେଳେ ସେ କହିଲେ, 'ଦିନେ ଏଇ କଙ୍କଣଟି ମୋର ଜୀବନଠାରୁ ପ୍ରିୟ ଥିଲା ।"

ପୋଷ୍ଟମସ୍‌ଙ୍କ ତୁଣ୍ଡରୁ ବାକ୍ୟ ସ୍ଫୁରିଲା ନାହିଁ । ପରିଶେଷରେ ଯେତେବେଳେ ସେ ଇମୋଜିନଙ୍କ ଗଳାର ତିଳଚିହ୍ନ ବିଷୟ କହିଲେ, ସେତେବେଳେ ପୋଷ୍ଟମସ୍ ଆଉ ଅବିଶ୍ୱାସ କରି ପାରିଲେ ନାହିଁ । ଇମୋଜିନ ବିଶ୍ୱାସଘାତିନୀ ବୋଲି ସ୍ଥିର କରି ସେ ଦୁଃଖରେ ଅଭିଭୂତ ହୋଇପଡ଼ିଲେ ଓ ବାଜିର ସର୍ତ୍ତ ଅନୁସାରେ ସେ ହାତରୁ ହୀରାର ମୁଦିଟି କାଢ଼ି ଇଆସିମୋଙ୍କୁ ଅର୍ପଣ କଲେ ।

ପୋଷ୍ଟମସ୍‌ଙ୍କର କ୍ରୋଧର ସୀମା ରହିଲା ନାହିଁ । ଇମୋଜିନଙ୍କୁ ଏହି ବିଶ୍ୱାସଘାତକତାର ଦଣ୍ଡ ଭୋଗିବାକୁ ହେବ—ଏହିପରି ସ୍ଥିର କରି ସେ ପିସାନିଓ ନାମକ ଜଣେ ଭୃତ୍ୟ ନିକଟକୁ ଖଣ୍ଡିଏ ପତ୍ର ଲେଖିଲେ । ସେ ଇମୋଜିନଙ୍କ ବିଶ୍ୱାସଘାତକତାର ଯେଉଁ ସବୁ ପ୍ରମାଣ ପାଇଥିଲେ, ସେସବୁ ଉଲ୍ଲେଖ କରି ପିସାନିଓଙ୍କୁ ଲେଖି-ଥିଲେ, "ଏ ପତ୍ର ପାଇବାମାତ୍ରେ ତୁମେ ଇମୋଜିନଙ୍କୁ ଓୟେଲସ୍‌ର ମିଲ୍‌ଫୋର୍ଡ଼ ହାଭେନ ବନ୍ଦରକୁ ନେଇ ସେଠାରେ ତାଙ୍କୁ ହତ୍ୟା କରିବ ।" ଏହା ସଙ୍ଗେ ସଙ୍ଗେ ସେ ଇମୋଜିନ ନିକଟକୁ ମଧ୍ୟ ଗୋଟିଏ ପତ୍ରରେ ଲେଖିଲେ, "ମୁଁ ବ୍ରିଟେନରୁ ନିର୍ବାସିତ ।

ବ୍ରିଟେନରେ ମୋର ଦେଖାମିଳିଲେ ମୃତ୍ୟୁଦଣ୍ଡ ନିଶ୍ଚିତ । କିନ୍ତୁ ତୁମକୁ ଦେଖିବାପାଇଁ ମୋର ହୃଦୟ ଏପରି ବ୍ୟାକୁଳ ଯେ ପ୍ରାଣଭୟ ଥିଲେ ମଧ୍ୟ ମୁଁ ମିଲଫୋର୍ଡ ହାଭେନଠାରେ ତୁମ ସଙ୍ଗେ ସାକ୍ଷାତ କରିବାକୁ ଯିବି । ତେଣୁ ତୁମେ ପିସାନିଓଙ୍କ ସହିତ ମିଲ୍ଫୋର୍ଡ଼ ହାଭେନକୁ ଆସିବ ।”

ଏହି ପତ୍ର ଯେ ପ୍ରତାରଣାପୂର୍ଣ୍ଣ, ତାହା ଇମୋଜେନଙ୍କୁ ଅଜ୍ଞାତ ଥିଲା । ସେ ସରଳ ବିଶ୍ୱାସରେ ପତିଙ୍କ ସାକ୍ଷାତ ପାଇବା ଆଶାରେ ପିସାନିଓଙ୍କ ସହିତ ମିଲ୍ ଫୋର୍ଡ଼ ହାଭେନକୁ ଆସିଲେ ।

ବନ୍ଦର ନିକଟବର୍ତ୍ତୀ ହେଲାବେଳକୁ ପିସାନିଓ ଇମୋଜେନଙ୍କୁ ଆସିବାର ପ୍ରକୃତ ଉଦ୍ଦେଶ୍ୟ ଜଣାଇଦେଲେ; ମାତ୍ର ପୋଷ୍ଟୁମସଙ୍କର ସେ ଅନୁଗତ ଥିଲେହେଁ ତାଙ୍କର ଏତାଦୃଶ ନିର୍ଦ୍ଦୟ ଆଦେଶ ପାଳନ କରିବାକୁ ପ୍ରସ୍ତୁତ ନ ଥିଲେ । ତେଣୁ ସେ ଇମୋଜେନଙ୍କୁ ଆଶ୍ୱାସନା ଦେଇ କହିଲେ, “ଧୈର୍ଯ୍ୟ ଧରି ରହିଥାଅ । ଦିନେ ନା ଦିନେ ପୋଷ୍ଟୁମସ୍ ନିଜର ଭ୍ରମ ବୁଝିପାରି ଅନୁତାପ କରିବେ ।”

ଇମୋଜେନଙ୍କ ହୃଦୟ ଦୁଃଖରେ ଏପରି ଭାଙ୍ଗିପଡ଼ିଲା ଯେ ସେ ଆଉ ପିତାଙ୍କ ରାଜପ୍ରାସାଦକୁ ଫେରିଯିବାକୁ ଅନିଚ୍ଛା ପ୍ରକାଶ କଲେ । ପିସାନିଓ ଉପଦେଶ ଦେଇ କହିଲେ—“ଜଣେ ଯୁବତୀ ପକ୍ଷରେ ଏକାକିନୀ ଭ୍ରମଣ କରିବା ନିରାପଦ ନୁହେଁ । ତେଣୁ ତୁମେ ଯୁବକର ପୋଷାକ ପିନ୍ଧି ପୁରୁଷର ନାମ ଗ୍ରହଣ କରିବା ଅପେକ୍ଷାକୃତ ନିରାପଦ ହେବ ।” ଇମୋଜେନ ଏହି ପରାମର୍ଶ ଗ୍ରହଣ କରି ପୁରୁଷର ପୋଷାକ ପିନ୍ଧିଲେ ।

ପିସାନିଓ ରାଜପ୍ରାସାଦକୁ ଫେରି ଆସିବା କଥା । ସେ ଫେରିବା ପୂର୍ବରୁ ଇମୋଜେନଙ୍କୁ ଗୋଟିଏ ବୋତଲରେ କିଛି ଔଷଧ ଦେଇ କହିଲେ, “ଏହି ଔଷଧଟିକୁ ରାଣୀ ମୋତେ ଦେଇ

କହିଥିଲେ ଯେ ଏହାର ଗୁଣ ଅଦ୍ଭୁତ । ଏଥିରୁ ଟିକିଏ ଖାଇଲେ ଯେକୌଣସି ରୋଗ ଆରୋଗ୍ୟ ହେବ । ତୁମର ଭାଗ୍ୟ ଏବେ ଅନିଶ୍ଚିତ । କେତେବେଳେ କଅଣ ଘଟିବ ସ୍ଥିର ନାହିଁ । ପାଖରେ ଔଷଧ ବୋତଲଟି ଥିଲେ ଦରକାର ବେଳେ କାର୍ଯ୍ୟରେ ଆସିବ ।”

ଏହି ଔଷଧ ବିଷୟରେ ଗୋଟିଏ ରହସ୍ୟ ଥିଲା । ରାଣୀ ଜାଣିଥିଲେ ଯେ ପିସାନିଓ ହେଉଛନ୍ତି ଇମୋଜେନ ଓ ପୋଷ୍ଟମସ୍ ଦୁହିଙ୍କର ବିଶ୍ୱାସୀ ବନ୍ଧୁ । ପିସାନିଓଙ୍କ ମୃତ୍ୟୁ ଘଟାଇବା ଉଦ୍ଦେଶ୍ୟରେ ସେ ରାଜବୈଦ୍ୟଙ୍କୁ ଦିନେ କହିଲେ, “ରାଜପ୍ରାସାଦରେ ଗୁଡ଼ାଏ ଜୀବ ବଡ଼ ଅନିଷ୍ଟ କରୁଛନ୍ତି । ଟିକିଏ ବିଷ ଦେଲେ ମୁଁ ସେମାନଙ୍କୁ ଖାଇବାକୁ ଦେଇ ମାରିଦେବି ।” କିନ୍ତୁ ରାଜବୈଦ୍ୟ ବଡ଼ ଚତୁର ଲୋକ । ରାଣୀଙ୍କର ଦୁଷ୍ଟ ପ୍ରକୃତି ତାଙ୍କୁ ଜଣାଥିଲା । ଏପରି ଲୋକ ହାତରେ ବିଷ ଶିଶି ପଡ଼ିଲେ କେଜାଣି କି ଅନିଷ୍ଟ କରିବ । ଏହିପରି ବିଚାରି ରାଜବୈଦ୍ୟ ସେହି ଶିଶିରେ ଏପରି ଏକ ଔଷଧ ଦେଇଥିଲେ ଯେ ତାହାକୁ କେହି ଖାଇଲେ ସେ କେତେକ ଘଣ୍ଟା ପର୍ଯ୍ୟନ୍ତ ମୃତବତ୍ ନିସ୍ପନ୍ଦ ଓ ନିଶ୍ଚେଷ୍ଟ ହୋଇ ପଡ଼ିରହିବ ମାତ୍ର । ରାଣୀ ପିସାନିଓଙ୍କର ଅନିଷ୍ଟସାଧନ ଉଦ୍ଦେଶ୍ୟରେ ଏହି ଔଷଧ ତାଙ୍କୁ ଦେଇ କହିଥିଲେ, ଏହାର ରୋଗ ଦୂର କରିବାର କ୍ଷମତା ଅଦ୍ଭୁତ ।

ପିସାନିଓ ଇମୋଜେନଙ୍କୁ ଆନ୍ତରିକ ଆଶୀର୍ବାଦ ଜଣାଇ ବିଦାୟ ନେଲେ ।

ସିମ୍ବେଲିନ୍‌ଙ୍କର ଶିଶୁପୁତ୍ରଦ୍ୱୟଙ୍କୁ ଯେ ଅପହରଣ କରି-ନେଇଥିଲେ ତାଙ୍କର ନାମ ବେଲାରିଅସ୍ । ଏହି ବେଲାରିଅସ୍ ଏକଦା ରାଜା ସିମ୍ବେଲିନ୍‌ଙ୍କ ରାଜପରିଷଦର ଜଣେ ସଭ୍ୟ ଥିଲେ; କିନ୍ତୁ ଥରେ

ରାଜା ମିଥ୍ୟା ସମ୍ବାଦରେ ବିଶ୍ୱାସ କରି ତାଙ୍କୁ ରାଜଦ୍ରୋହ ଅଭିଯୋଗରେ ରାଜ୍ୟରୁ ବିତାଡ଼ିତ କରିଥିଲେ । ଏହି ଅନ୍ୟାୟର ପ୍ରତିଶୋଧ ନେବାପାଇଁ ବେଲାରିଅସ୍ ରାଜାଙ୍କର ଶିଶୁପୁତ୍ରଦ୍ୱୟଙ୍କୁ ଅପହରଣ କରି ନେଇ ବନମଧ୍ୟରେ ଗୋଟିଏ ଗହ୍ୱରରେ ବାସ-କରୁଥିଲେ । ତଥାପି ଶିଶୁ ଦୁଇଟିଙ୍କ ପ୍ରତି ତାଙ୍କର ହିଂସାଭାବ ଆଦୌ ନଥିଲା । ସେ ସେମାନଙ୍କୁ ନିଜର ସନ୍ତାନ ଭଳି ସ୍ନେହ ଓ ଆଦରରେ ଲାଳନପାଳନ କରୁଥିଲେ ଓ ଯଥାସମ୍ଭବ ଉପଯୁକ୍ତ ଶିକ୍ଷା ଦେଉଥିଲେ ।

ଦୈବର ଗତି ଅଦ୍ଭୁତ । ଇମୋଜିନ ଏଣେତେଣେ ବୁଲୁବୁଲୁ ହିନେ ସେହି ଗହ୍ୱରରେ ଉପସ୍ଥିତ ହେଲେ । ବନ ମଧ୍ୟରେ ବାଳକଦ୍ୱୟ କଠୋର ଜୀବନ ଯାପନ କରୁଥିଲେ । ସେମାନେ ପାଳକ ବେଲାରିଅସ୍‌ଙ୍କୁ ନିଜର ପିତା ବୋଲି ମନେ କରିଥିଲେ । ବନ ମଧ୍ୟରେ ଶିକାର କରି ସେମାନଙ୍କୁ ନିଜର ଖାଦ୍ୟ ସଂଗ୍ରହ କରିବାକୁ ପଡ଼ୁଥିବାରୁ ସେମାନେ ବଳିଷ୍ଠ ଓ କର୍ମକ୍ଷମ ହୋଇଥିଲେ । ଯୁଦ୍ଧକୌଶଳ ମଧ୍ୟ ସେମାନେ କିଛି କିଛି ଶିକ୍ଷା କରିଥିଲେ । ସେମାନେ ଯୁଦ୍ଧକ୍ଷେତ୍ରରେ ଯୋଗ ଦେଇ ନିଜର ଭାଗ୍ୟ ନିର୍ଣ୍ଣୟ କରିବା ପାଇଁ ପିତାଙ୍କୁ ବାରମ୍ବାର ଅନୁରୋଧ କରୁଥିଲେ ।

ଇମୋଜିନ ବାଳକବେଶରେ ମିଲଫୋର୍ଡ଼ ହାଭେନକୁ ଯିବାବେଳେ ପଥ ହରାଇ ଏଠାରେ ପହଞ୍ଚିଯାଇଥିଲେ । ସେ ଭାବିଥିଲେ ଯେ ମିଲଫୋର୍ଡ଼ ହାଭେନରେ ପହଞ୍ଚିଗଲେ କୌଣସି ଜାହାଜରେ ବସି ରୋମ୍‌କୁ ଚାଲିଯିବେ । କିନ୍ତୁ ପଥରେ ତାଙ୍କୁ ଅନେକ କଷ୍ଟ ସହ୍ୟ କରିବାକୁ ପଡ଼ିଲା । କୌଣସିଠାରେ ଖାଦ୍ୟ କିଣିବାକୁ ମିଳିଲା ନାହିଁ । ପଥ ହରାଇ ଓ କ୍ଳାନ୍ତ ହୋଇ ସେ ମନେକଲେ ଅନାହାରରେ ତାଙ୍କର ପ୍ରାଣ ବାହାରିଯିବ । ପୁରୁଷର ପୋଷାକ

ପିନ୍ଧିଲେ ଯେ ପୁରୁଷର ଧୈର୍ଯ୍ୟ, ସାହସ ଓ ବଳ ଆସିଯିବ, ତାହା ହୋଇ ନ ପାରେ । ଦୈବାତ୍ ଗହ୍ୱରଟି ଦେଖି ଇମୋଜେନଙ୍କ ମନରେ ଟିକିଏ ଆଶା ଜାଗିଲା । ହୁଏତ ଗହ୍ୱରରେ କେହି ଥିବ ଓ ସେ ସାହାଯ୍ୟ କରିବ; ମାତ୍ର ଗହ୍ୱରରେ ପ୍ରବେଶ କରି ସେ ଦେଖିଲେ ସେଥିରେ କେହି ନାହାନ୍ତି । ସେ ଗହ୍ୱର ଭିତର ଅନୁସନ୍ଧାନ କରି ଦେଖିଲେ, ଗୋଟିଏ ସ୍ଥାନରେ କିଛି ମାଂସ ଅଛି । ତାଙ୍କୁ ଏପରି କ୍ଷୁଧା ହେଉଥିଲା ଯେ ସେ ଆଗପଛ କିଛି ନ ବିଚାରି ସେଥିରୁ କିଛି ଆଣି ଖାଇବାକୁ ଲାଗିଲେ । ଦେହରେ ଟିକିଏ ବଳ ଆସିବାରୁ ସେ କହିଲେ, "ଉଃ, କି କଷ୍ଟ ! ପୁରୁଷର ଜୀବନ ଆଦୌ ସୁଖର ଜୀବନ ନୁହେଁ । ଆଜିକୁ ଦୁଇ ଦିନ ହେଲା ମୋ ପେଟରେ ଆହାର ପଡ଼ି ନଥିଲା । ଭୂଇଁତଳ ଛଡ଼ା ଶୋଇବାକୁ ଅନ୍ୟ କିଛି ଆସନ ପାଇ-ନାହିଁ । ପିସାନିଓ ପାହାଡ଼ ଉପରୁ ମୋତେ ମିଲ୍‌ଫୋର୍ଡ଼ ହାଭେନ ଦେଖାଇଦେଇଥିଲେ । ମନେହେଉଥିଲା ଯେ ସେ ସ୍ଥାନଟା ଅତି ନିକଟରେ ! ମାତ୍ର କାହିଁ ? ଆଉ କେତେ ଦୂର ଯିବାକୁ ହେବ, କିଏ ଜାଣେ ?"

ସ୍ୱାମୀ ଯେ ତାଙ୍କର ପ୍ରାଣ ନାଶ ନିମନ୍ତେ ବ୍ୟବସ୍ଥା କରିଥିଲେ, ତାହା ସ୍ମରଣ କରି ସେ ପୁଣି କହିଲେ, "ହାୟ, ପୋଷ୍ଟମସ୍ ! ତୁମେ ଯେ ମୋତେ ଏପରି ଅବିଶ୍ୱାସ କରିବ ତାହା ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି ।"

ବେଲାରିଅସ ଓ ତାଙ୍କର ପାଳିତ ପୁତ୍ରଦ୍ୱୟ ଶିକାର କରିବାକୁ ଯାଇଥିଲେ । ସେ ଦୁହେଁ ଯେ ଇମୋଜେନଙ୍କ ସହୋଦର ଭାଇ, ତାହା କେହି ଜାଣି ନଥିଲେ । ବେଲାରିଅସ୍ ସେମାନଙ୍କ ନାମକୁ ମଧ୍ୟ ବଦଳାଇଦେଇଥିଲେ । ଏବେ ସେ ଦୁହେଁ ପଲିଡୋର ଓ କାଡ୍‌ୱେଲ ନାମରେ ପରିଚିତ ଥିଲେ ।

ବେଲ୍ଲରିଅସ ପ୍ରଥମେ ଆସି ଗହ୍ୱରରେ ପ୍ରବେଶ କରି ଇମୋଜନଙ୍କୁ ଦେଖିବା ମାତ୍ରେ ବାଳକ ଦୁହିଁଙ୍କୁ ଭିତରକୁ ଆସିବାକୁ ବାରଣ କରି କହିଲେ, "ବର୍ତ୍ତମାନ ଭିତରକୁ ଆସ ନାହିଁ । ମୁଁ ଭାବିଥିଲି, ଆମ ଗହ୍ୱରରେ କାହିଁ ଏକ କନ୍ଦର ଆବିର୍ଭାବ ହୋଇଅଛି । କିନ୍ତୁ ସେ ଆମର ଖାଦ୍ୟ ଖାଉଛି । ତେଣୁ ମୋର ବିଶ୍ୱାସ, ସେ ଆମର ପରି ରକ୍ତମାଂସର ମନୁଷ୍ୟ ।"

ଏଥିରେ ବାଳକଦ୍ୱୟ ବିସ୍ମୟ ପ୍ରକାଶ କଲେ । ବେଲ୍ଲରିଅସ୍ ପୁଣି କହିଲେ, "ଆମ ଗହ୍ୱରରେ କାହିଁ ଏକ କନ୍ଦର ବାଳକ ଆସି ପ୍ରବେଶ କରିଛି; ତା ହୋଇ ନ ଥିଲେ ସେ ପୃଥିବୀର ସର୍ବଶ୍ରେଷ୍ଠ ସୁନ୍ଦର ପୁରୁଷ ହୋଇଥିବ ।"

ମନୁଷ୍ୟର ସ୍ୱର ଶୁଣି ଇମୋଜନ ଘରୁ ବାହାରିଆସି କହିଲେ, "ଆପଣମାନେ ମୋତେ କୌଣସି ପ୍ରକାର କଷ୍ଟ ଦିଅନ୍ତୁ ନାହିଁ । ମୁଁ ଏ ଗହ୍ୱରରେ ପ୍ରବେଶ କଲାବେଳେ ଭାବିଥିଲି ଯେ ଆପଣ-ମାନଙ୍କଠାରୁ ମାଗି ମୋର ଖାଦ୍ୟ ସଂଗ୍ରହ କରିବି ଅଥବା ଖାଦ୍ୟର ମୂଲ୍ୟ ଦେଇ କିଣିନେବି । ବାସ୍ତବରେ ମୁଁ ଆପଣମାନଙ୍କର କୌଣସି ପଦାର୍ଥ ଚୋରି କରିନାହିଁ । ଏ ଗହ୍ୱରରେ ସୁନାରୁପା ଏଣେ-ତେଣେ ପଡ଼ିଥିଲେହେଁ ମୁଁ ସେସବୁ କିଛି ସ୍ପର୍ଶ ସୁଦ୍ଧା କରିନାହିଁ । ମୁଁ ଯାହା ଖାଉଛି, ତାର ମୂଲ୍ୟ ରଖିଦେଇ ଯିବାକୁ ବସିଥିଲି । ମୁଁ ଖାଇସାରି ଆପଣଙ୍କ ଦୀର୍ଘଜୀବନ କାମନା କରି ଚାଲିଯାଇଥାନ୍ତି । ଯାହାହେଉ ମୁଁ ଖାଦ୍ୟର ମୂଲ୍ୟ ଦେଉଛି, ଗ୍ରହଣ କରନ୍ତୁ ।" କିନ୍ତୁ ସେମାନେ ପଇସା ରଖିବାକୁ ଅସ୍ୱୀକାର କଲେ । ତହୁଁ ଇମୋଜନ କହିଲେ, "ଆପଣମାନେ ମୋର ଆଚରଣରେ କ୍ରୁଦ୍ଧ ହୋଇଥିବେ । ମୋର ଅପରାଧ ପାଇଁ ଆପଣମାନେ ମୋତେ ମାରିଦେଇପାରନ୍ତି ।

ମୁଁ ଏ ଖାଦ୍ୟ ଖାଇ ନଥିଲେ ଏତେବେଳକୁ କ୍ଷୁଧାରେ ମଧ୍ୟ ପ୍ରାଣ ହରାଇଥାନ୍ତି ।"

ବେଲାରିଅସ୍ ପଚାରିଲେ, "ଯୁବକ, ତୁମର ନାମ କଣ ? ତୁମେ କୁଆଡ଼େ ଯାଉଛ ?"

ଇମୋଜେନ ଉତ୍ତର କଲେ, "ମୋର ନାମ ଫିଡ଼େଲ । ମୋର ଜଣେ ବନ୍ଧୁ ମିଲଫୋର୍ଡ଼ ହାଭେନରେ ଜାହାଜରେ ବସି ରୋମ୍ ଯାଉଛନ୍ତି । ତାଙ୍କର ପାଖକୁ ଯାଉ ଯାଉ ବାଟ ହରାଇ କ୍ଷୁଧାର ତାଡ଼ନାରେ ମୁଁ ଏପରି ଅପରାଧ କରିପକାଇଅଛି ।"

ବୃଦ୍ଧ ବେଲାରିଅସ୍ କୋମଳ ସ୍ୱରରେ କହିଲେ, "ବତ୍ସ, ଆମମାନଙ୍କର ଏ ବାସସ୍ଥାନ ଓ ଖାଦ୍ୟ ଦେଖି ମନେ କର ନାହିଁ ଯେ ଆମେମାନେ ଅମନୁଷ୍ୟ । ତୁମେ ଯଥେଷ୍ଟ କଷ୍ଟ ଭୋଗିଛ । ରାତି ହୋଇଆସିଲାଣି । ଆଜ ରାତିଟି ଏଠାରେ ବିଶ୍ରାମ ନିଅ ଓ ଯାହା କିଛି ଖାଦ୍ୟ ଖାଅ । ସକାଳେ ଚାଲିଯିବ ।"

ବେଲାରିଅସ୍‌ଙ୍କ ଆଦେଶରେ ବାଳକ ଦୁହେଁ ଯୁବକଟିକୁ ଅଭ୍ୟର୍ଥନା ଜଣାଇ ଗହ୍ୱର ଭିତରକୁ ନେଇଗଲେ ଏବଂ କହିଲେ "ଆମେମାନେ ତୁମକୁ ଆପଣାର ଭାଇ ପରି ମନେକରୁ । ତୁମେ ଏଠାରେ ସ୍ୱଚ୍ଛନ୍ଦରେ ରହିପାର ।"

ସେଦିନ ହରିଣ ମରାହୋଇ ଆସିଥିଲା । ଇମୋଜେନ ବାଳକ-ଦ୍ୱୟଙ୍କ ସହିତ ମିଶି ରନ୍ଧାବଢ଼ାରେ ସାହାଯ୍ୟ କଲେ । ଫିଡ଼େଲଙ୍କୁ ଭଲ ରନ୍ଧା ଆସେ ବୋଲି ସମସ୍ତେ ପ୍ରଶଂସା କଲେ । ଖାଇବା ଶେଷରେ ଫିଡ଼େଲ୍ ଗୋଟିଏ ଗୀତ ଗାଇଲେ । ପଲିଡୋର ତାହା ଶୁଣି କହିଲେ, "ଫିଡ଼େଲ୍ ଭାଇର ସ୍ୱରଟି ସତେ ଯେପରି ଅପ୍ସରାର ସ୍ୱର ।"

ପଲିଡ଼ୋର ଓ କାଡ଼ୱେଲ କଥାବାର୍ତ୍ତା ପ୍ରସଙ୍ଗରେ କହିଲେ, "ଫିଡେଲର ହସଟି ବଡ଼ ମଧୁର; କିନ୍ତୁ ଗୋଟାଏ ବିଷାଦର ଛାୟା ତା ମୁହଁକୁ ଆବରଣ କରି ରଖିଛି । ବୋଧହୁଏ ଦୁଃଖ ଓ ଧୈର୍ଯ୍ୟ ଏକାଧାରରେ ତାକୁ ଅଧିକାର କରି ରହିଛନ୍ତି ।"

ଫିଡ଼େଲର ମଧୁର ବ୍ୟବହାରରେ ଦୁଇଭାଇ କିଣି ହୋଇଗଲେ । ବୋଧହୁଏ ସେମାନଙ୍କର ରକ୍ତ-ସମ୍ପର୍କ ସେମାନଙ୍କୁ ପରସ୍ପର ନିକଟକୁ ଟାଣିନେଉଥିଲା । ଫିଡେଲବେଶୀ ଇମୋଜେନ ଭାବିଲେ ଯେ ତାଙ୍କର ପୋଷ୍ଟମସ୍‌ଙ୍କର ଚିନ୍ତା ନ ଥିଲେ ସେ ଚିରଦିନ ସେହି ଗହ୍ୱରରେ ରହି ଏମାନଙ୍କ ସଙ୍ଗେ ଦିନ କଟାଇଦିଅନ୍ତେ । ଯାହାହେଉ ସେ କ୍ଲାନ୍ତି ଦୂର ହେବାଯାଏ ସେଠାରେ ରହିବାକୁ ସ୍ୱୀକୃତ ହେଲେ ।

ହରିଣ-ମାଂସ ସରିଯିବାରୁ ପଲିଡୋର ଓ କାଡୱେଲ ପିତାଙ୍କ ସହ ପୁଣି ଶିକାରକୁ ବାହାରିଲେ; ମାତ୍ର ଦୁର୍ବଳ ଓ କ୍ଲାନ୍ତ ହୋଇଥିବାରୁ ଫିଡେଲ ଗହ୍ୱରରେ ରହିଲେ । ସେ ଦୁହେଁ ବାଟରେ ଯିବାବେଳେ ଫିଡେଲର ମଧୁର ବ୍ୟବହାର ଓ ନାନା ସଦ୍‌ଗୁଣର ଆଲୋଚନା କରି କରି ଚାଲିଲେ ।

ଇମୋଜେନ କ୍ଲାନ୍ତ ଅନୁଭବ କରୁଥିଲାବେଳେ ତାଙ୍କର ମନେ ପଡ଼ିଗଲା ଯେ ପିସାନିଓ ତାଙ୍କୁ ଗୋଟିଏ ଶିଶି ଔଷଧ ଦେଇଥିଲେ । ସେ କ୍ଲାନ୍ତି ଓ ଅବସାଦ ଦୂରହେବା ଉଦ୍ଦେଶ୍ୟରେ ତାହା ପିଇଲେ ଓ ସଙ୍ଗେ ସଙ୍ଗେ ଘୋର ନିଦ୍ରାରେ ଅଭିଭୂତ ହୋଇଗଲେ । ତାଙ୍କଠାରେ ଜୀବନର କୌଣସି ଲକ୍ଷଣ ଥିଲାପରି ମନେ ହେଉ ନ ଥିଲା ।

ଶିକାର ସାରି ବେଲରିଅସ୍ ଓ ତାଙ୍କ ପାଳିତ ପୁତ୍ରଦ୍ୱୟ ଗହ୍ୱରକୁ ଫେରିଲେ । ପଲିଡ଼ୋର ପ୍ରଥମେ ଗହ୍ୱର ମଧ୍ୟରେ ପ୍ରବେଶ

କରି ଦେଖିଲେ ଯେ ଫିଡ଼େଲ୍ ଶୋଇରହିଛନ୍ତି । ଘୋଡାର ଶବ୍ଦରେ କାଳେ ତାର ନିଦ୍ରାରେ ବ୍ୟାଘାତ ହେବ ବୋଲି ସେ ଘୋଡ଼ାରୁ ଘୋଡା ଖୋଲିପକାଇଲେ । କିନ୍ତୁ କିଛି ସମୟ ପରେ ସେ ଜାଣି-ପାରିଲେ ଯେ ଫିଡ଼େଲଙ୍କ ପିଣ୍ଡରେ ଆଉ ପ୍ରାଣ ନାହିଁ । ସେମାନେ ସମସ୍ତେ ଫିଡ଼େଲଙ୍କର ଏହି ଆକସ୍ମିକ ମୃତ୍ୟୁରେ ଗଭୀର ଶୋକ ପ୍ରକାଶ କଲେ ଓ ସ୍ଥିର କଲେ ଯେ ଶବଟିକୁ ବନ ମଧ୍ୟକୁ ନେଇ ଯଥାବିଧି ସତ୍କାର କରିବେ ।

ପଲଡୋର ଓ କାଡ଼ୱେଲ ଫିଡେଲଙ୍କୁ ନେଇ ବନର ଏକ ତୃଣାଚ୍ଛାଦିତ ଶଯ୍ୟାରେ ଶୁଆଇଦେଲେ ଓ ସ୍ୱର୍ଗତ ଆତ୍ମା ଉଦ୍ଦେଶ୍ୟରେ ଭଗବାନଙ୍କ ନିକଟରେ ପ୍ରାର୍ଥନା କଲେ । ତତ୍ପରେ ସେମାନେ ଶବଟିକୁ ପତ୍ର ଓ ପୁଷ୍ପରେ ଆଚ୍ଛାଦନ କରିଦେଲେ ।

ଏହାପରେ ଶବ ସତ୍କାର ଶେଷ କରି ସେମାନେ ନିଜ ଗହ୍ୱରକୁ ଫେରିଆସିଲେ ।

ଇମୋଜନ ଯେଉଁ ଔଷଧ ପିଇଥିଲେ କ୍ରମେ ତାହାର ନିଶା ଭଙ୍ଗା ହୋଇଆସୁଥିଲା । କେତେକ ଘଣ୍ଟା ପରେ ସେ ନିଦରୁ ଉଠି ଦେଖିଲେ ଯେ ବନର ଏକ ତୃଣାଚ୍ଛନ୍ନ ଶଯ୍ୟାରେ ସେ ଶୋଇଛନ୍ତି ଓ ତାଙ୍କ ଉପରେ ଗୁଡ଼ାଏ ପତ୍ରପୁଷ୍ପ ଜମାହୋଇଛି । ସେଗୁଡ଼ିକୁ ସେ ଦେହ ଉପରୁ ଫିଙ୍ଗିଦେଇ ଭାବିଲେ, "ମୁଁ ତ ଗୁହାଭିତରେ ରହି ରନ୍ଧାବଢ଼ା କରୁଥିଲି, ଏଠାକୁ ଆସିଲି କିପରି ? ମୋ ଉପରେ କିଏ କାହିଁକି ଏତେ ଫୁଲ ଲଦିଦେଇଛି ?"

ସେ ଗହ୍ୱରକୁ ଫେରିଯିବାକୁ ଚେଷ୍ଟାକଲେ; ମାତ୍ର ପଥ ପାଇଲେ ନାହିଁ । କୌଣସିଠାରେ ବେଲାରିଅସ୍ ବା ତାଙ୍କ ପୁତ୍ରଦ୍ୱୟଙ୍କର ଦେଖା ମଧ୍ୟ ମିଳିଲା ନାହିଁ । ଶେଷରେ ସେ ଭାବିଲେ ଯେ ଏସବୁ ତାଙ୍କର ମସ୍ତିଷ୍କର ବିକାର ଅଥବା ଗୋଟାଏ ସ୍ୱପ୍ନ । ତେଣୁ ସେ

ପୁନରସ୍ପ ମିଲଫୋର୍ଡ ହାବେନକୁ ଯିବାକୁ ସ୍ଥିର କଲେ । ସେଠାରୁ ସେ କୌଣସି ଜାହାଜରେ ରୋମକୁ ଯାଇ ତାଙ୍କର ପତିଙ୍କୁ ଭେଟିପାରିବେ ।

କିନ୍ତୁ ଏଥିମଧ୍ୟରେ ଅନେକ ଘଟନା ଘଟିଯାଇଥିଲା । ଇମୋଜନ ସେସବୁର କିଛି ମାତ୍ର ଖବର ରଖି ନଥିଲେ । ହଠାତ୍ ରୋମର ସମ୍ରାଟ୍ ଅଗଷ୍ଟସ୍ ସିଜର୍ ଓ ବ୍ରିଟେନର ରାଜା ସିମ୍ନେଲନ୍ଙ୍କ ମଧ୍ୟରେ ଯୁଦ୍ଧ ଲାଗିଗଲା । ରୋମର ସୈନ୍ୟମାନେ ବ୍ରିଟେନର ଉପକୂଳରେ ପହଞ୍ଚାଇ ଆକ୍ରମଣ କରିବା ଉଦ୍ଦେଶ୍ୟରେ ଗୋଟିଏ ବନ ପ୍ରଦେଶରେ ଉପସ୍ଥିତ ହେଲେ । ଇମୋଜନ ସେହି ବନ ମଧ୍ୟରେ ବୁଲୁଥିଲେ । ଏହି ରୋମାନ ସୈନିକମାନଙ୍କ ଦଳରେ ପୋଷ୍ଟମସ୍ ଆସିଥିଲେ ।

ପୋଷ୍ଟମସ୍ ରୋମାନ ସୈନ୍ୟମାନଙ୍କ ସହିତ ବ୍ରିଟେନକୁ ଆସିଥିଲେ ସତ; କିନ୍ତୁ ବ୍ରିଟନମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ତାଙ୍କର ଅଭିପ୍ରାୟ ନ ଥିଲା । ସେ ଭାବିଥିଲେ ଯେ ବ୍ରିଟେନରେ ପହଞ୍ଚିଗଲେ ରୋମାନ୍ ସୈନ୍ୟଦଳ ତ୍ୟାଗ କରି ବ୍ରିଟେନର ସୈନ୍ୟମାନଙ୍କ ସହ ମିଳିତ ହେବେ ଓ ଶତ୍ରୁ ରୋମାନ୍‌ମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବେ । ଅବଶ୍ୟ ବ୍ରିଟେନର ରାଜା ସିମ୍ନେଲନ୍ ତାଙ୍କୁ ଦେଶରୁ ନିର୍ବାସନ କରିଥିଲେ; କିନ୍ତୁ ତା ବୋଲି ସେ କିପରି ସ୍ୱଦେଶ ବିରୁଦ୍ଧରେ ରୋମାନ୍‌ମାନଙ୍କ ସଙ୍ଗେ ଯୋଗଦେବେ ?

ଏବେ ସୁଦ୍ଧା ତାଙ୍କର ଧାରଣା ଥିଲା ଯେ ଇମୋଜନ ବିଶ୍ୱାସ-ଘାତିନୀ ଥିଲେ । ପିସାନିଓ ତାଙ୍କୁ ପତ୍ରରେ ଜଣାଇଥିଲେ ଯେ ତାଙ୍କ ଆଦେଶ ଅନୁସାରେ ସେ ଇମୋଜନଙ୍କୁ ହତ୍ୟା କରିଅଛନ୍ତି । ଇମୋଜନଙ୍କୁ ସେ ପ୍ରାଣ ଦେଇ ଭଲପାଉଥିଲେ । ଏବେ ସେହି ଇମୋଜନ ଆଉ ପୃଥିବୀରେ ନାହାନ୍ତି—ଏହା ଭାବିଲା ବେଳକୁ

ତାଙ୍କର ହୃଦୟ ବଦଳି ହୋଇଯାଏ; ନିଜର ଜୀବନ ପ୍ରତି ଆଉ ମମତା ରହେ ନାହିଁ । ତେଣୁ ସେ ରୋମାନ୍ ସୈନ୍ୟମାନଙ୍କ ସହ ବ୍ରିଟେନକୁ ଚାଲିଆସିଲେ । ସେ ଭାବିଥିଲେ ଯେ ହୁଏତ ଯୁଦ୍ଧ-ଭୂମିରେ ତାଙ୍କର ମୃତ୍ୟୁ ହେବ ଅଥବା ନିର୍ବାସିତ ହୋଇଥିବା ଅବସ୍ଥାରେ ବ୍ରିଟେନକୁ ଆସିଥିବା ଅପରାଧରେ ତାଙ୍କର ମୃତ୍ୟୁଦଣ୍ଡ ହେବ ।

ମିଲ୍‌ଫୋର୍ଡ଼ ହାଭେନ ବନ୍ଦରରେ ପହଞ୍ଚିବା ପୂର୍ବରୁ ଇମୋଜିନଙ୍କୁ ରୋମାନ୍ ସୈନ୍ୟମାନେ ବନ୍ଦୀ କରି ନେଇଗଲେ । ଅବଶ୍ୟ ସୈନ୍ୟମାନେ ତାଙ୍କୁ ଜଣେ ଯୁବକ ବୋଲି ମନେ କରି-ଥିଲେ; କିନ୍ତୁ ଇମୋଜିନଙ୍କର ଆଚାର ଓ ବ୍ୟବହାରରେ ସନ୍ତୁଷ୍ଟ ହୋଇ ରୋମାନ୍ ସେନାପତି ଲୁସିଅସ୍ ତାଙ୍କୁ ବନ୍ଦୀଭାବରେ ନରଖି ନିଜର ବ୍ୟକ୍ତିଗତ ଭୃତ୍ୟରୂପେ ରଖିଲେ ।

ସିମ୍ବେଲିନ୍‌ଙ୍କ ସୈନ୍ୟମାନେ ଅଗ୍ରସର ହୋଇ ରୋମାନ୍-ମାନଙ୍କର ସମ୍ମୁଖୀନ ହେଲେ । ପଲିଡୋର ଓ କାଡ଼ୱେଲ ଏହି ସୁଯୋଗରେ ବ୍ରିଟେନର ସୈନ୍ୟଦଳରେ ଯୋଗଦେଲେ । ସେମାନେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ ଯେ ସେମାନେ ଯେଉଁ ରାଜାଙ୍କ ପାଇଁ ଯୁଦ୍ଧ କରିବାକୁ ଯାଉଅଛନ୍ତି, ସେ ସେମାନଙ୍କର ଜନ୍ମଦାତା ପିତା ।

ବେଲାରିଅସ୍ ମଧ୍ୟ ଏହି ଯୁଦ୍ଧରେ ରାଜାଙ୍କ ପକ୍ଷରେ ଯୁଦ୍ଧ କରିବାକୁ ଯାଇଥିଲେ । ରାଜା ତାଙ୍କ ପ୍ରତି ଅନ୍ୟାୟ କରିଥିଲେ ସତ; କିନ୍ତୁ ସେ ତାଙ୍କର ପୁତ୍ରଦ୍ୱୟଙ୍କୁ ଅପହରଣ କରି ଆଣି ତାଙ୍କୁ କମ୍ ମନଃକଷ୍ଟ ଦେଇନାହାନ୍ତି । ଏଥିର ପ୍ରାୟଶ୍ଚିତ୍ତ ସ୍ୱରୂପ ଆଜି ସେ ମଧ୍ୟ ସିମ୍ବେଲିନଙ୍କ ପାଇଁ ଯୁଦ୍ଧ କରିବାକୁ ବାହାରି-ଅଛନ୍ତି ।

ଉଭୟ ପକ୍ଷର ସୈନ୍ୟଦଳ ମଧ୍ୟରେ ଏକ ଭୀଷଣ ଯୁଦ୍ଧ ଉପସ୍ଥିତ ହେଲା । ଏହି ଯୁଦ୍ଧରେ ବ୍ରିଟେନମାନେ ପରାଜିତ ହୋଇଥାନ୍ତେ ଓ ସ୍ୱୟଂ ରାଜା ସିମ୍ବେଲିନ ନିହତ ହୋଇଥାନ୍ତେ; କିନ୍ତୁ ପୋଷ୍ଟମସ୍ ଏବଂ ବେଲାରସ୍ୟୁସ ଓ ତାଙ୍କ ପୁତ୍ରଦ୍ୱୟଙ୍କ ଅଭୂତପୂର୍ବ ସାହସ ଓ ଯୁଦ୍ଧକୌଶଳ ଯୋଗୁ ଯୁଦ୍ଧର ଗତି ସମ୍ପୂର୍ଣ୍ଣରୂପେ ବଦଳିଗଲା । ସେମାନେ ରାଜାଙ୍କୁ ଆସନ୍ନ ମୃତ୍ୟୁମୁଖରୁ ଉଦ୍ଧାର କରି ଆଣିଲେ ଓ ରୋମାନ୍ ସୈନ୍ୟମାନଙ୍କୁ ପରାସ୍ତ କରିବାକୁ ଲାଗିଲେ ।

ଯୁଦ୍ଧ ଶେଷରେ ପୋଷ୍ଟମସ୍ ସିମ୍ବେଲିନଙ୍କର ଜଣେ କର୍ମଚାରୀଙ୍କ ନିକଟରେ ଆତ୍ମସମର୍ପଣ କରି କହିଲେ—ମୋତେ ରାଜା ନିର୍ବାସନ ଦଣ୍ଡ ଦେଇଥିଲେ । ମୁଁ ଆଦେଶ ଲଙ୍ଘନ କରି ବ୍ରିଟେନକୁ ଆସିଥିବାରୁ ମୋତେ ମୃତ୍ୟୁଦଣ୍ଡ ଦିଆଯାଉ ।

ବାଳକବେଶୀ ଇମୋଜେନ, ତାଙ୍କର ପ୍ରଭୁ ରୋମାନ ସେନାପତି ଲୁସିଅସ ଓ ତାଙ୍କର ପ୍ରବଞ୍ଚକ ଇଆସିମୋ ମଧ୍ୟ ବନ୍ଦୀ ହୋଇ ରାଜା ସିମ୍ବେଲିନଙ୍କ ସମ୍ମୁଖରେ ଉପସ୍ଥାପିତ ହେଲେ । ଇଆସିମୋ ରୋମାନ ସୈନ୍ୟ ଦଳରେ ଯୋଗ ଦେଇ ଏକ ଦଳପତି ପଦ ପାଇଥିଲେ । ପ୍ରଥମେ ପୋଷ୍ଟମସଙ୍କୁ ମୃତ୍ୟୁଦଣ୍ଡ ନିମନ୍ତେ ରାଜାଙ୍କ ନିକଟକୁ ଅଣାଗଲା । ଠିକ୍ ଏହି ସମୟରେ ବେଲାରସ୍ୟୁସ ଓ ତାଙ୍କ ପୁତ୍ରଦ୍ୱୟଙ୍କୁ ପୁରସ୍କାର ଦେବା ନିମନ୍ତେ ରାଜାଙ୍କ ପାଖରୁ ଡାକରା ଆସିଲା । ସେତେବେଳେ ପିସାନିଓ ମଧ୍ୟ ଜଣେ ରାଜ-କର୍ମଚାରୀରୂପେ ସେଠାରେ ଉପସ୍ଥିତ ଥିଲେ ।

ବର୍ତ୍ତମାନ ରାଜାଙ୍କ ସମକ୍ଷରେ ଥିଲେ ପୋଷ୍ଟମସ, ଇମୋଜେନ, ରୋମାନ୍ ସେନାପତି ଲୁସିଅସ, ବିଶ୍ୱସ୍ତ ରାଜକର୍ମଚାରୀ ପିସାନିଓ, କପଟୀ ବନ୍ଧୁ ଇଆସିମୋ, ରାଜାଙ୍କର ଅପହୃତ ପୁତ୍ରଦ୍ୱୟ ପଲିଡୋର

ଓ କାଡ୍‌ଓ୍ୱେଲ ଏବଂ ସେମାନଙ୍କର ଅପହରଣକାରୀ ବେଲାରିଅସ୍ । ଏମାନଙ୍କ ମଧ୍ୟରୁ କେତେକ ଦଣ୍ଡର ଆଶଙ୍କା ରଖିଥିଲେ ଓ ଅନ୍ୟ କେତେକ ପୁରସ୍କୃତ ହେବାର କଥା ।

ରୋମାନ୍ ସେନାପତି ଲୁସିଅସ୍ ପ୍ରଥମେ ରାଜାଙ୍କ ନିକଟରେ ନିଜର ବକ୍ତବ୍ୟ ପ୍ରକାଶ କଲେ । ଅନ୍ୟମାନେ ନୀରବ ରହି ଶୁଣିଲେ ମାତ୍ର ।

ଇମୋଜେନ ପୋଷ୍ଟୁମସଙ୍କୁ ଦେଖି ଚିହ୍ନି ପାରିଲେ । ଅବଶ୍ୟ ସେତେବେଳକୁ ସେ ଜଣେ କୃଷକର ପରିଚ୍ଛଦ ପରିଧାନ କରିଥିଲେ । ମାତ୍ର ପୋଷ୍ଟୁମସ ବାଳକବେଶୀ ଇମୋଜେନଙ୍କୁ ଆଦୌ ଚିହ୍ନି ପାରି ନ ଥିଲେ । ଇମୋଜେନ ଆହୁରି ମଧ୍ୟ ଲକ୍ଷ୍ୟ କରି ପାରିଲେ ଯେ ଇଆସିମୋଙ୍କ ଅଙ୍ଗୁଳିରେ ସେ ପୋଷ୍ଟୁମସଙ୍କୁ ଦେଇଥିବା ଅଙ୍ଗୁରୀୟଟି ଚକ୍‌ଚକ୍ କରୁଅଛି । ମାତ୍ର ଏତେବେଳ ପର୍ଯ୍ୟନ୍ତ ସେ ଜାଣି ନଥିଲେ ଯେ ତାଙ୍କର ସମସ୍ତ ଅନର୍ଥର ମୂଳ ହେଉଛି ଏହି ଇଆସିମୋ । ଇମୋଜେନ ଏବେ ନିଜ ପିତାଙ୍କ ନିକଟରେ ଯୁଦ୍ଧବନ୍ଦୀରୂପେ ଉପସ୍ଥିତ ।

ପିସାନିଓ ଇମୋଜେନଙ୍କୁ ପୁରୁଷବେଶ ପିନ୍ଧାଇ ଦେଇଥିଲେ । ତେଣୁ ସେ ଅତି ସହଜରେ ତାଙ୍କୁ ଚିହ୍ନି ପାରିଥିଲେ । ସେ ଭାବିଲେ "ଯାହାହେଉ, ଇମୋଜେନ ଆଜି ପର୍ଯ୍ୟନ୍ତ ପ୍ରାଣ ଧାରଣ କରି ରହି-ଛନ୍ତି । ଏଣିକି ଯାହା ହେବାର ହେଉ ।" ବେଲାରିଅସ୍ ମଧ୍ୟ ତାଙ୍କୁ ଚିହ୍ନି ପାରିଲେ । ସେ କାଡ୍‌ଓ୍ୱେଲଙ୍କୁ କହିଲେ, "ପୁଅ, ଦେଖ ତ, ଏ ଠିକ୍ ସେଇ ଫିଡେଲ ପରି ଦିଶୁନାହିଁ କି ? କାହିଁ, ଟିକିଏ ହେଲେ ତ କିଛି ପ୍ରଭେଦ ଦେଖି ପାରୁ ନାହିଁ । ବୋଧ-ହୁଏ ଫିଡେଲ ପୁନର୍ଜୀବନ ଧାରଣ କରି ଫେରି ଆସିଛି ।" ପଲିଡୋର ମଧ୍ୟ ଏଥିରେ ଏକମତ ହେଲେ ।

ପୋଷ୍ଟମସ ମୃତ୍ୟୁଦଣ୍ଡର ଆଦେଶ ଶୁଣିବାକୁ ଅପେକ୍ଷା କରି ରହିଥିଲେ । ସେ ଯେ ଯୁଦ୍ଧଭୂମିରେ ରାଜାଙ୍କର ଜୀବନ ରକ୍ଷା କରିଥିଲେ ତାହା ମଧ୍ୟ ପ୍ରକାଶ କରିବାକୁ ଅନିଚ୍ଛୁକ । ଏହା ଜାଣିଲେ ହୁଏତ ରାଜା ତାଙ୍କୁ ମୃତ୍ୟୁଦଣ୍ଡରୁ ଅବ୍ୟାହତି ଦେଇ ପାରନ୍ତି । ଜୀବନ ପ୍ରତି ଯାହାର ଆଦୌ ମମତା ନାହିଁ, ସେ କାହିଁକି ଜୀବନଲାଗି ବ୍ୟାକୁଳ ହେବ । ମରଣ ତାର କାମ୍ୟ ।

ଲୁସିଅସ୍ କହିଲେ, "ମହାରାଜ, ମୁଁ ଶୁଣିଛି ଯେ ଅର୍ଥ ବିନିମୟରେ ଆପଣ ଯୁଦ୍ଧବନ୍ଦୀଙ୍କୁ ମୁକ୍ତ କରନ୍ତି ନାହିଁ । ଯୁଦ୍ଧବନ୍ଦୀ ପାଇଁ ଆପଣଙ୍କର ଏକମାତ୍ର ଦଣ୍ଡ ହେଉଛି ମୃତ୍ୟୁଦଣ୍ଡ । ମୁଁ ଜଣେ ରୋମାନ୍ ଓ ରୋମାନ୍ ସୈନ୍ୟର ମୃତ୍ୟୁଦଣ୍ଡ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛି । କିନ୍ତୁ ମୃତ୍ୟୁ ପୂର୍ବରୁ ମୋର ଗୋଟିଏ ପ୍ରାର୍ଥନା ଅଛି । ଏହି ବାଳକଟି ରୋମାନ ନୁହେଁ, ସେ ହେଉଛି ବ୍ରିଟନ । ସେ ମୋର ଭୃତ୍ୟରୂପେ କାର୍ଯ୍ୟ କରୁଥିଲା । ତାପରି ବୁଦ୍ଧିମାନ୍, କର୍ତ୍ତବ୍ୟ-ପରାୟଣ ଓ ବିଶ୍ୱସ୍ତ ଭୃତ୍ୟ ମୁଁ କେବେ ଦେଖିନାହିଁ । ସେ ଯେ ଜଣେ ରୋମାନ ନିକଟରେ ଥିଲା, ଏହାହିଁ ତାର ଅପରାଧ । ମୋର ବିନୀତ ପ୍ରାର୍ଥନା, ଅର୍ଥ ବିନିମୟରେ ଏହି ବାଳକଟିର ଜୀବନ ରକ୍ଷା କରାଯାଉ ।"

ରାଜା ସିମ୍ବେଲିନ୍ ନିଜର କନ୍ୟା ଇମୋଜିନଙ୍କୁ ଯୁବକ ଛଦ୍ମବେଶରେ ଆଦୌ ଚିହ୍ନି ପାରୁ ନ ଥିଲେ । ମାତ୍ର ସେ ଅନୁଭବ କଲେ—ସତେ ଯେପରି ସେ ଏହାକୁ କେଉଁଠାରେ ବହୁବାର ଦେଖିଅଛନ୍ତି । ଯାହାହେଉ ରାଜା ଆଦେଶ ଦେଲେ—"ଯୁବକ, ତୁମର ପ୍ରାଣ ରକ୍ଷା କରାଗଲା । ବର୍ତ୍ତମାନ ତୁମେ ମୋତେ ଗୋଟିଏ ବର ମାଗିପାର । ଯାହା ମାଗିବ ତାହା ନିଶ୍ଚୟ ପାଇବ ।

ଏଥର କ ଯେକୌଣସି ଯୁଦ୍ଧବନ୍ଦୀର ଜୀବନ ରକ୍ଷା କରିବାକୁ ଗୁହିଁଲେ ତାହା ମଧ୍ୟ ହୋଇପାରିବ ।"

ଲୁସିଅସ ଇମୋଜନଙ୍କୁ ଲକ୍ଷ୍ୟ କରି କହିଲେ, "ଯୁବକ, ମୁଁ ଜାଣେ, ତୁମେ ମୋର ଜୀବନ ଭିକ୍ଷା କରିବ । ମାତ୍ର ମୁଁ ବଞ୍ଚିବାକୁ ଇଚ୍ଛା କରେ ନାହିଁ । ତୁମେ ସ୍ୱଚ୍ଛନ୍ଦରେ ଅନ୍ୟ ପ୍ରାର୍ଥନା ଜଣାଇ-ପାର ।"

ଇମୋଜନ କହିଲେ, "ନାଁ ପ୍ରଭୁ, ମୁଁ ଆପଣଙ୍କ ଜୀବନ ଭିକ୍ଷା କରିବା ଚିନ୍ତା କରୁନାହିଁ । ମୋର ଅନ୍ୟ କାର୍ଯ୍ୟ ରହିଛି ।"

ଯୁବକର ଆପାତତଃ ଏହି କୃତଘ୍ନ ଆଚରଣରେ ରୋମାନ୍ ସେନାପତି ଲୁସିଅସ ଏକାନ୍ତ ବିସ୍ମିତ ହେଲେ ।

ଇମୋଜନ ଇଆସିମୋଙ୍କ ଆଡ଼କୁ ଦୃଷ୍ଟି ପକାଇ କହିଲେ— "ମହାରାଜ, ମୋର ଏତିକି ମାତ୍ର ପ୍ରାର୍ଥନା ଯେ ଏହି ଭଦ୍ରଲୋକ କେଉଁଠାରୁ ଓ କପରି ଏହି ମୁଦ୍ରିକାଟି ପାଇଲେ ତାହା ସର୍ବସମକ୍ଷରେ ପ୍ରକାଶ କରନ୍ତୁ ।"

ସିମ୍ବେଲିନ୍ ଏହି ପ୍ରାର୍ଥନା ମଞ୍ଜୁର କରି ଇଆସିମୋଙ୍କୁ ଆଦେଶ ଦେଲେ—"ତୁମ ଅଙ୍ଗୁଳିରେ ଯେଉଁ ହୀରାର ମୁଦିଟି ଅଛି, ତାହା କେଉଁଠାରୁ କପରି ପାଇଲ, ସତ କରି କହ । ନୋହିଲେ ତୁମକୁ ଭୀଷଣ ଯନ୍ତ୍ରଣା ଦିଆଯାଇ ସତକଥା ବାହାର କରାଯିବ ।"

ଇଆସିମୋ ଏହିପରି ଅବସ୍ଥା-ଚକ୍ରରେ ପଡ଼ି ନିଜର ସମସ୍ତ ଦୁଷ୍କୃତି ସ୍ୱୀକାର କରିଗଲେ । ପୋଷ୍ଟମସ୍‌ଙ୍କ ସହ ବାଜି ରଖିବା, ବାକ୍ସରେ ଲୁଚି ଇମୋଜନଙ୍କ ଶୟନ କକ୍ଷରେ ପ୍ରବେଶ କରିବା, କୌଶଳରେ ତାଙ୍କ ହସ୍ତରୁ କଙ୍କଣ କାଢ଼ିନେବା—ଏସବୁ କଥା ପ୍ରକାଶ ପାଇଗଲା ।

ପୋଷ୍ଟୁମସ୍ ଏବେ ଜାଣିପାରିଲେ ଯେ ଇମୋଜନ ପ୍ରକୃତରେ ସତୀ, ସାଧ୍ୱୀ ପତିବ୍ରତା । ତାର ବଧ ସାଧନ କରାଇଥିବାରୁ ସେ ନିତାନ୍ତ ଦୁଃଖ ଓ ଅନୁତାପରେ ଦଗ୍‌ଧ ହୋଇ କହିଲେ— ହାୟ ଇମୋଜନ । ତୁମକୁ ଭୁଲ ବୁଝି କି ଅପରାଧ କଲି !

ନିଜ ପ୍ରାଣପତିଙ୍କର ଏ ଘୋର ବିଷାଦ ଓ ଅନୁତାପ ଦେଖି ଇମୋଜନ ଆତ୍ମପ୍ରକାଶ ନ କରି ରହିପାରିଲେ ନାହିଁ । ପୋଷ୍ଟୁମସ୍‌ଙ୍କ ଆନନ୍ଦ କିଏବା ବର୍ଣ୍ଣନା କରିପାରିବ ? ସେ ମନେକରୁଥିଲେ ଯେ ଇମୋଜନର ହତ୍ୟା ଅପରାଧରେ ସେ ଅପରାଧୀ ଓ ତାଙ୍କ ପାପର ପ୍ରାୟଶ୍ଚିତ୍ତ ଅସମ୍ଭବ । ମାତ୍ର ଏବେ ଇମୋଜନ ବଞ୍ଚିଥିବାର ଜାଣି ସେ ଯତ୍ପରୋନାସ୍ତି ଆନନ୍ଦ ପ୍ରକାଶ କଲେ ଓ ତାଙ୍କ ସହିତ ପୁନର୍ମିଳିତ ହେଲେ ।

ସିମ୍ବେଲିନ୍ ଦେଖିଲେ ଯେ ତାଙ୍କର କନ୍ୟା ଇମୋଜନ ପୁଣି ତାଙ୍କ କୋଳକୁ ଫେରିଆସିଛି । ସେ ଆନନ୍ଦରେ ଅଧୀର ହୋଇ କେବଳ ଯେ ପୋଷ୍ଟୁମସ୍‌ଙ୍କର ଜୀବନ ରକ୍ଷା କଲେ ତାହା ନୁହେଁ; ତାଙ୍କୁ ନିଜର ଜାମାତାରୂପେ ଗ୍ରହଣ କରିବାକୁ ସ୍ୱୀକୃତ ହେଲେ ।

ବେଲାରିଅସ୍ ଦେଖିଲେ ଏହାହିଁ ହେଉଛି ଦୋଷ ସ୍ୱୀକାର କରିବାର ଉପଯୁକ୍ତ ଅବସର । ସେ ଗୁଇଡେରିଅସ୍ ଓ କାଡ଼ୱେଲଙ୍କୁ ରାଜାଙ୍କ ହସ୍ତରେ ଅର୍ପଣ କରି କହିଲେ, "ମହାରାଜ, ଏ ଦୁହେଁ ପ୍ରକୃତରେ ହେଉଛନ୍ତି ଆପଣଙ୍କର ଅପହୃତ ପୁତ୍ରଦ୍ୱୟ । ଆପଣ ମୋ ପ୍ରତି ଯେଉଁ ନିର୍ବାସନ ଦଣ୍ଡବିଧାନ କରିଥିଲେ, ତାହାର ପ୍ରତିଶୋଧ ନେବାପାଇଁ ମୁଁ ଶିଶୁ ଦୁଇଟିଙ୍କୁ ଅପହରଣ କରି ନେଇ ବନ ମଧ୍ୟରେ ଲାଳନପାଳନ କରୁଥିଲି । ଆପଣଙ୍କର ଗୁଇଡେରିଅସ୍ ଓ

ଆର୍ଭିରେଗସ୍‌ଙ୍କୁ ପୁନର୍ଗ୍ରହଣ କରି ମୋତେ ଉପଯୁକ୍ତ ଦଣ୍ଡ ଦିଅନ୍ତୁ ।"

ନିଜର ପୁତ୍ରଦ୍ୱୟ ଓ କନ୍ୟାକୁ ଫେରିପାଇ ସିମ୍ବେଲିନ୍ ଆନନ୍ଦରେ ଉତ୍ଫୁଲ୍ଲ ହୋଇପଡ଼ିଲେ । ସେ ବେଲାରିଅସ୍‌ଙ୍କୁ କ୍ଷମା ପ୍ରଦାନ କରି କହିଲେ—"ଯେଉଁ ପୁତ୍ରଦ୍ୱୟ ଅପୂର୍ବ ସାହସସହକାରେ ଯୁଦ୍ଧ କରି ମୋ ଜୀବନ ରକ୍ଷା କରିଛନ୍ତି, ମୋର ରାଜ୍ୟକୁ ରକ୍ଷା କରିଛନ୍ତି, ସେମାନଙ୍କୁ ଫେରିପାଇ ମୁଁ ଆନନ୍ଦରେ ବିଭୋର ହୋଇ ପଡ଼ିଅଛି । ଏତେବେଳେ କି କାହାକୁ ଦଣ୍ଡ ଦେଇପାରେ ?"

ଇମୋଜିନ ସୁଯୋଗ ପାଇ ପିତାଙ୍କୁ ପ୍ରାର୍ଥନା କଲେ—"ରୋମାନ ସେନାପତି ଲୁସିଅସ୍‌ଙ୍କ ପ୍ରାଣ ରକ୍ଷା କରାଯାଉ । ରାଜା ଆନନ୍ଦରେ କନ୍ୟାର ଏହି ପ୍ରାର୍ଥନା ପୂରଣ କଲେ । ଲୁସିଅସ୍ ସିମ୍ବେଲିନ୍‌ଙ୍କର ଉଦାର ବ୍ୟବହାରରେ ମୁଗ୍‌ଧ ହୋଇ ବ୍ରିଟେନ ସହିତ ଏକ ଶାନ୍ତିଚୁକ୍ତିରେ ଆବଦ୍ଧ ହେଲେ ।

ସିମ୍ବେଲିନ୍‌ଙ୍କ ଦୁଷ୍ଟା ରାଣୀଙ୍କର ସବୁ କୁପାଞ୍ଚ ବ୍ୟର୍ଥ ହୋଇଗଲା । ତାଙ୍କର ପୁଅ କ୍ଲୋଟନ୍ ଗୋଟିଏ କଳହରେ ଲିପ୍ତ ହୋଇ ପ୍ରାଣ ହରାଇଲେ । ରାଣୀ ସବୁ ଉଦ୍ୟମରେ ବିଫଳ ହୋଇ ଦୁଃଖ ଓ ଅନୁଚିନ୍ତାରେ କିଛିକାଳ ପରେ ପ୍ରାଣତ୍ୟାଗ କଲେ । ବିଶ୍ୱାସଘାତକ ଇଆସିମୋକୁ ବନ୍ଦୀ ଦଣ୍ଡରେ ଦଣ୍ଡିତ କରାଗଲା । ଏହିପରି କେତେଜଣ ଦୁଷ୍ଟ ବ୍ୟକ୍ତି ଦଣ୍ଡିତ ହେଲେ ସତ; କିନ୍ତୁ ଯେଉଁମାନେ ନିର୍ଦ୍ଦୋଷ ସେମାନଙ୍କ ଜୀବନ ସୁଖରେ ଅତିବାହିତ ହେଲା । ଚିରକାଳ ଯେ ସତ୍ୟ ଓ ଧର୍ମର ଜୟ ହୁଏ, ତାହା ପ୍ରମାଣିତ ହୋଇଗଲା ।

---

# ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

୧ । ଅଲିଭର ଟୁଇଷ୍ଟ
୨ । ଗଲିଭରର ଭ୍ରମଣ କାହାଣୀ
୩ । ମୃଚ୍ଛକଟିକ ଓ ମୁଦ୍ରାରାକ୍ଷସ
୪ । ସମୁଦ୍ରର ନାବିକ
୫ । ରାଜା ସଲୋମନଙ୍କ ସ୍ୱର୍ଣ୍ଣଖଣି
୬ । ବିପ୍ଳବ
୭ । ଛଅ ସିପାହି
୮ । ପମ୍ପେଇନଗରର ଶେଷଦିନ
୯ । ରାଜପୁତ୍ର ଓ ଭିକାରି
୧୦ । ଦୁଇଟି ନଗରର କାହାଣୀ
୧୧ । ଡନ୍‌କ୍ୱିକ୍ସ
୧୨ । ସାଇଲସ୍ ମାରନାର୍
୧୩ । ଲୌହମୁଖାଧାରୀ ମଣିଷ
୧୪ । ରବିନ୍‌ସନ୍ କ୍ରୁଶୋ
୧୫ । ଅଶୀ ଦିନରେ ପୃଥିବୀ ପରିକ୍ରମଣ
୧୬ । ଦୁଃଖିନୀ
୧୭ । ବିଚିତ୍ର ଡାକ୍ତର
୧୮ । ଶେକ୍‌ସପିଅର କାହାଣୀ (୧ମ)
୧୯ । ,, ,, (୨ୟ)
୨୦ । ,, ,, (୩ୟ)
୨୧ । ଗ୍ରୀସଦେଶର ଉପକଥା
୨୨ । ଅନେକ ଆଶା
୨୩ । ସମୁଦ୍ର ଗର୍ଭରେ କୋଡ଼ିଏହଜାର ଲିଗ୍ ଭ୍ରମଣ
୨୪ । ଟମ୍‌ସଏର୍
୨୫ । ଟଲ୍‌ଷ୍ଟୟ କାହାଣୀ (୧ମ)
୨୬ । ,, ,, (୨ୟ)
୨୭ । ଚେକଭ୍ କାହାଣୀ
୨୮ । ଆଇଭାନ୍‌ହୋ
୨୯ । ଚନ୍ଦ୍ରକାନ୍ତ ମଣି
୩୦ । ରତ୍ନଦ୍ୱୀପ
୩୧ । ପ୍ରବାଳ ଦ୍ୱୀପ
୩୨ । କଳାଶର
୩୩ । ରବିନ୍ ହୁଡ୍
୩୪ । ଫ୍ରୋଜୋ
୩୫ । ନିକୋଲାସ ନିକଲ୍‌ବି
୩୬ । ହେଂଜୁର ରୁପର୍ଟ
୩୭ । ବନ୍ଦିଘର
୩୮ । ଡେଭିଡ୍ କପରଫିଲ୍ଡ
୩୯ । ହ୍ୱରଣ୍ଡେଲ
୪୦ । କଲାଫୁଲ
୪୧ । ଟମକକାଙ୍କ କେବିନ୍
୪୨ । ଲୋରନାଡ଼ୋନ୍
୪୩ । ଓମର କାହାଣୀ
୪୪ । ଗର୍କି କାହାଣୀ